VOL XLIX No. 1 UTKAL PRASANGA Regd. No. 0-05/92
Licence No. C.R.N.P. 5--Licensed to post without Pre-Payment





ଭୁବନେଶ୍ୱରଠାରେ ଅନିଶ୍ଚିତ ଦୁସ୍ଥ ଅବସ୍ଥାରେ ରହୁଥିବା ଶିଶୁମାନଙ୍କ ଉପରେ ଏକ କର୍ମଶାଳାର ଉଦ୍‌ଘାଟନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

PRINTED AT ORISSA GOVERNMENT PRESS, CUTTACK-753010





ସୂଚନା ଭବନଠାରେ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ଭାରତ ଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ଉଦ୍‌ଘାଟନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି । ଏହି ଉତ୍ସବରେ ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା, ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମ୍ୱାର କର ଓ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିଜୟ କୁମାର ପାଣି ଯୋଗଦାନ କରିଛନ୍ତି (୯/୮) ।



ଉଚ୍ଚକୋଟୀର କାର୍ଯ୍ୟଦକ୍ଷତା ଓ କର୍ତ୍ତବ୍ୟନିଷ୍ଠା ପାଇଁ ଶ୍ରେଷ୍ଠ ବିବେଚିତ ପୋଲିସ୍ ଅଫିସରମାନଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜନରାଜ୍ୟ ଦିବସରେ ସୂଚନା ଭବନଠାରେ ପୋଲିସ୍ ପଦକ ପ୍ରଦାନ କରୁଛନ୍ତି (୧୫/୮) ।

# ଉତ୍କଳ ପ୍ରସଙ୍ଗ

୪୯ ଭାଗ ୨ୟ ସଂଖ୍ୟା ଭାଦ୍ର ୧୯୧୪ ଶକାବ୍ଦ ସେପ୍ଟେମ୍ବର ୧୯୯୨


## ସମ୍ପାଦକ ମଣ୍ଡଳୀ




ପ୍ରଚ୍ଛଦପଟ୍ଟ : ଆଶିଷ କୁମାର ପାଣ୍ଡେ

ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର।

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

# ସୂଚୀ


| | | |
|---|---|---|
| ସିଦ୍ଧ ପଞ୍ଚମା ଗଣେଶ | ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି | ୧ |
| ମଲ୍‌ବେରୀ ତୁତ ଗଛ ଓ ରେଶମ କୀଟ ପାଳନ | ସଞ୍ଜୀବ୍ କୁମାର ପଣ୍ଡା | ୪ |
| ସଂସ୍କୃତି – କାଲି ଓ ଆଜିର | ଅଧ୍ୟାପକ ଡକ୍ଟର ସମର ମୁଦାଲି | ୭ |
| ସାଧାରଣ ବଣ୍ଟନ ବ୍ୟବସ୍ଥା ଓ ଯୋଗାଣ ନିଗମ | ଶ୍ରୀ ଉମା ପ୍ରସାଦ ଦାସ | ୯ |
| ସମ୍ପୂର୍ଣ୍ଣ ସାକ୍ଷରତା ଅଭିପ୍ରେରଣା ପାଇଁ ଛଉ ନୃତ୍ୟ | କାଶୀନାଥ ବାରିକ | ୧୩ |
| କଙ୍ଗୋଦ ମଣ୍ଡଳର ସାଧୀନତା | ଶ୍ରୀ ପ୍ରଶାନ୍ତ କୁମାର ରାୟ | ୧୪ |
| ବର୍ଷା ରାସ | ପ୍ରହରାଜ ସତ୍ୟନାରାୟଣ ନନ୍ଦ | ୧୬ |
| ଯାଯାବର | ଶ୍ରୀ ନୀଳମଣି ମିଶ୍ର | ୧୮ |
| ଶିଶୁମାନଙ୍କ ତରଳ ଝାଡ଼ା : କାରଣ ଓ ନିରାକରଣ | ଡା: କଲ୍ୟାଣୀ ଦାଶ | ୧୯ |
| ଦାର୍ଶନିକ ଗୁରୁ ରାଧାକୃଷ୍ଣନ୍ | କୁମାରୀ ଧନଲକ୍ଷ୍ମୀ ମହାନ୍ତି | ୨୨ |
| ଜୁଆଙ୍ଗ ସଂସ୍କୃତି ଓ ଜୀବନଧାରା | ଶ୍ରୀ ଫକୀର ଚରଣ ରାଉତ | ୨୪ |
| ଯେଉଁଠି ଗାଁ ଲୋକେ ସଂସ୍କୃତ ଭାଷାରେ କଥା ହୁଅନ୍ତି | ଡକ୍ଟର ସଦାନନ୍ଦ ଦୀକ୍ଷିତ | ୨୬ |
| ଭାଷା ଅନେକ, ଦେଶ ଗୋଟିଏ | ଶ୍ରୀମତୀ ବିଜୟା ମହାପାତ୍ର | ୨୮ |
| ପାଠକଙ୍କ କଲମରୁ | .. | ୩୦ |
| ସାର୍ଥକ ସ୍ୱପ୍ନ | .. | ୩୨ |
| ସମ୍ବାଦ ପରିକ୍ରମା | .. | ୩୪ |
| ଫକୀର ମୋହନ : ନିଜସ୍ୱ କବିତାର ଦର୍ପଣରେ ନିଜେ | ଶ୍ରୀ ବ୍ରଜନାଥ ରଥ | ୪୨ |
| ଚରିତ୍ର ଚିତ୍ରଣରେ ସେକ୍ସପିୟର ଓ ଫକୀର ମୋହନ | ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି | ୪୩ |
| ଯୋଗଜନ୍ମା ଫକୀର ମୋହନ | ଶ୍ରୀ ମନୋରଞ୍ଜନ ନନ୍ଦ | ୪୮ |
| ଫକୀର ମୋହନ ସେନାପତି : ଅବିସ୍ମରଣୀୟ ବ୍ୟକ୍ତିତ୍ୱ | ଶ୍ରୀ ଉପେନ୍ଦ୍ର ପ୍ରସାଦ ଦାସ | ୫୦ |

## ଗୁରୁ ଦିବସ ପାଳନ ଅବସରରେ

# ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା



୩୧ତମ ଗୁରୁ ଦିବସ ପାଳନ ଅବସରରେ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ପାଇଁ ନିବେଦନ କରିଛନ୍ତି :

"ଚଳିତ ବର୍ଷ ୧୯୯୨ ସେପ୍‌ଟେମ୍ବର ୫ ତାରିଖରେ ସମଗ୍ର ଦେଶରେ ୩୧ ତମ ଗୁରୁ ଦିବସ ପାଳନ କରାଯାଉଛି । ଏଣୁ ଓଡ଼ିଶାର ଅଗଣିତ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ମୁଁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଶୃଙ୍ଖଳିତ, ସୁସଙ୍ଗଠିତ ଓ କର୍ତ୍ତବ୍ୟନିଷ୍ଠ ନାଗରିକ ଗଠନ ଦାୟିତ୍ୱ ଶିକ୍ଷକମାନଙ୍କ ଉପରେ ନ୍ୟସ୍ତ ଥିବା ଯୋଗୁଁ ସେମାନେ ହେଲେ ସମାଜର ମେରୁଦଣ୍ଡ ଓ ସେଥିପାଇଁ ଗୁରୁ ଦିବସରେ ସେମାନଙ୍କୁ ସମ୍ମାନ ଦିଆଯାଇଥାଏ ।

୧୯୬୨ ମସିହାରୁ ଶିକ୍ଷକମାନଙ୍କର କଲ୍ୟାଣ ନିମନ୍ତେ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠି ଗଠିତ ହୋଇଛି । ଅଭାବଗ୍ରସ୍ତ ଶିକ୍ଷକ, ଅକାଳ ମୃତ୍ୟୁବରଣ କରିଥିବା ଅଥବା କ୍ରମାଗତ ପୀଡ଼ିତ ରହୁଥିବା ଶିକ୍ଷକ ଏବଂ ତାଙ୍କ ଉପରେ ନିର୍ଭର କରି ଚଳୁଥିବା ପରିବାରବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଦେବା ନିମନ୍ତେ ଏହି ପାଣ୍ଠି ଉଦ୍ଦିଷ୍ଟ । ଏହି ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ପାଇଁ ମୁଁ ରାଜ୍ୟବାସୀଙ୍କୁ ନିବେଦନ କରୁଛି ।"

## ଗୁରୁ ଦିବସ ପାଳନ ଉପଲକ୍ଷେ

# ଶିକ୍ଷା ମନ୍ତ୍ରୀଙ୍କ ବାର୍ତ୍ତା



୩୧ତମ ଗୁରୁ ଦିବସ ପାଳନ ଉପଲକ୍ଷେ ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି :

"ଆଜି ସେପ୍‌ଟେମ୍ବର ୫ ତାରିଖ ୧୯୯୨ ସମଗ୍ର ଦେଶରେ ୩୧ତମ ଗୁରୁ ଦିବସ ପାଳନ କରାଯାଉଛି । ଏହି ଅବସରରେ ମୁଁ ଆମ ରାଜ୍ୟର ସମସ୍ତ ଶିକ୍ଷକ ଓ ଶିକ୍ଷୟତ୍ରୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ବୈଦିକ ଯୁଗରୁ ଗୁରୁପୂଜା ଆମ ସଂସ୍କୃତି ସହିତ ଜଡ଼ିତ । ଏହି ଗୁରୁମାନଙ୍କ ମହାନ ଅବଦାନରେ ଆମର ଶିକ୍ଷା ଓ ସଂସ୍କୃତିର ଇତିହାସ ସମୃଦ୍ଧ । ଭବିଷ୍ୟତ ବଂଶଧର ତଥା ଭାବି ନାଗରିକ ଗଠନର ଗୁରୁଦାୟିତ୍ୱ କେବଳ ଏହି ଗୁରୁମାନେ ହିଁ ବହନ କରିଥାନ୍ତି । ଶିକ୍ଷାଦାନ ସଙ୍ଗେ ସଙ୍ଗେ ଶିକ୍ଷକମାନଙ୍କର ବ୍ୟକ୍ତିତ୍ୱ ଓ ଉନ୍ନତ ଚରିତ୍ରର ଉଦାହରଣ ଛାତ୍ର ସମାଜର ପାଥେୟ ହୋଇଥାଏ । ଯେଉଁମାନେ ଦେଶର ଭବିଷ୍ୟତ ଗଠନ କରନ୍ତି ସେମାନଙ୍କୁ ସର୍ବଦା ସାମାଜିକ ସମ୍ମାନ ଦିଆଯିବା ଉଚିତ ।

ଆଜିର ଏହି ଶୁଭ ଅବସରରେ ଶିକ୍ଷକ ସମାଜକୁ ମୋର ଅନୁରୋଧ ଯେ ସେମାନେ ନିଜର ଆଦର୍ଶବାଦ ଓ କର୍ତ୍ତବ୍ୟନିଷ୍ଠା ଦ୍ୱାରା ଏକ ସୁସ୍ଥ ଓ ଶୃଙ୍ଖଳିତ ଛାତ୍ର ସମାଜ ଗଠନ କରି ଦେଶ ଓ ଜାତିର କଲ୍ୟାଣ ସାଧନ କରନ୍ତୁ ।"

(ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ)

## ଗୁରୁ ଦିବସ ପାଳନ ଅବସରରେ

# ଶିକ୍ଷା ରାଷ୍ଟ୍ରମନ୍ତ୍ରୀଙ୍କ ବାର୍ତ୍ତା



୨୧ତମେ ଗୁରୁ ଦିବସ ପାଳନ ଅବସରରେ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଡା:(ଶ୍ରୀମତୀ) କମଳା ଦାସ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି :

"ଆଜିର ଏ ପବିତ୍ର 'ଗୁରୁ ଦିବସ'ରେ ମୁଁ ଆମ ରାଜ୍ୟର ଶିକ୍ଷକ ସମାଜକୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି । ଏହି ପବିତ୍ର ଦିନଟି ହେଉଛି ଆମ ଜାତିର ମହାନ୍ ଦାର୍ଶନିକ ସ୍ୱର୍ଗୀୟ ସର୍ବପଲ୍ଲୀ ଡକ୍ଟର ରାଧାକୃଷ୍ଣନ୍‌ଙ୍କର ପୁଣ୍ୟ ଜନ୍ମତିଥି । ସେ ମଧ୍ୟ ଥିଲେ ଜଣେ ଆଦର୍ଶ ଶିକ୍ଷକ । ତାଙ୍କର ଆଦର୍ଶବାଦ, ଦେଶାତ୍ମବୋଧ ଓ ସାମାଜିକ ମୂଲ୍ୟବୋଧ ସମଗ୍ର ଶିକ୍ଷକ ସମାଜକୁ ପ୍ରଭାବିତ କରିବା ସଙ୍ଗେ ଶୃଙ୍ଖଳିତ ଓ କର୍ତ୍ତବ୍ୟନିଷ୍ଠ ଛାତ୍ର ସମାଜ ଗଠନରେ ତାଙ୍କର ଆଦର୍ଶ ଯେ ସହାୟକ ହେବ ଏହା ନିଃସନ୍ଦେହ । ଯେଉଁ ଶିକ୍ଷକ ସମାଜ ଭବିଷ୍ୟତ ନାଗରିକ ଗଠନରେ ସତତ ଚେଷ୍ଟିତ, ସେମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ମଧ୍ୟ ଆମ ସମସ୍ତଙ୍କର କର୍ତ୍ତବ୍ୟ ।

ଆଜିର ଏହି ମହାନ ଦିବସରେ ଶିକ୍ଷକ ସମାଜ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ ନିମନ୍ତେ ରାଜ୍ୟବାସୀଙ୍କୁ ମୋର ବିନମ୍ର ଅନୁରୋଧ । ଏଥି ସଙ୍ଗେ ସଙ୍ଗେ ସମଗ୍ର ଶିକ୍ଷକ ସମାଜ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର ମୂଲ୍ୟବୋଧରେ ଅନୁପ୍ରାଣିତ ହୋଇ ନିଷ୍ଠାର ସହିତ ଉତ୍ସର୍ଗୀକୃତ ଭାବରେ ନିଜ ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ନିବେଦନ କରୁଛି ।"

(ଡାକ୍ତର କମଳା ଦାସ)

# ସମ୍ପାଦକୀୟ

## ଭୁଲ କେଉଁଠି ?

ଆମ ଦେଶର ଅର୍ଥନୈତିକ ସମସ୍ୟା ଦିନକୁ ଦିନ ଜଟିଳ ହେବାରେ ଲାଗିଛି । ବିଶ୍ୱ ବ୍ୟାଙ୍କରୁ ଋଣ ପାଇବା ମଧ୍ୟ କାଠିକର ବ୍ୟାପାର ହୋଇ ପଡ଼ିଲାଣି । ଦେଶର ଖାଦ୍ୟ ସଙ୍କଟକୁ ଦୂର କରିବା ପାଇଁ ଆମକୁ ଅନ୍ୟ ରାଷ୍ଟ୍ର ଉପରେ ନିର୍ଭର କରିବାକୁ ପଡୁଛି । ବେକାରୀ ସମସ୍ୟା ଦିନକୁ ଦିନ ଉତ୍କଟ ହେବାରେ ଲାଗିଛି । ବେକାରୀ ବୃଦ୍ଧି ଯୋଗୁଁ "ଅଭାବେ ସ୍ୱଭାବ ନଷ୍ଟ" ନୀତିରେ ଅସାମାଜିକ କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗିଛି । ଫଳତଃ ଆଇନ୍ ଶୃଙ୍ଖଳା ମଧ୍ୟ ବିପର୍ଯ୍ୟସ୍ତ ହେବାରେ ଲାଗିଛି । ଏଭଳି ବିଭିନ୍ନ ସମସ୍ୟା ଆଜି ଦେଶ ପାଇଁ ଓ ଦେଶବାସୀଙ୍କ ପାଇଁ ବୋଝ ହୋଇ ରହିଛି । ଅତୀତର ସୁନାର ଭାରତ ଆଜି ସମସ୍ୟା ବହୁଳ ହୋଇ ପଡ଼ିଛି ।

ଏ ସବୁ ସମସ୍ୟା କାହିଁକି ?

ଭୁଲ୍ କେଉଁଠି ??

ଯେ କୌଣସି ସମସ୍ୟା ଦେଖାଦେଲେ ତାହା ନିର୍ମୂଳି ଲତା ଭଳି ବିଭିନ୍ନ କ୍ଷେତ୍ରକୁ ବ୍ୟାପିଯାଇ ବିନା ନିମନ୍ତ୍ରଣରେ, ବିନା ଆହ୍ୱାନରେ ଅନେକ ଆନୁଷଙ୍ଗିକ ସମସ୍ୟା ସୃଷ୍ଟି କରିଥାଏ । ସୁତରାଂ ପ୍ରଥମେ ଦେଖାଦେଇଥିବା ସମସ୍ୟାକୁ ମୂଳୋତ୍ପାଟନ କରିବା ହିଁ ସର୍ବ ପ୍ରଥମ ଆବଶ୍ୟକତା ।

ସବୁ ସମସ୍ୟାର ମୂଳରେ ଗୋଟିଏ କାରଣ ରହିଛି, ତା ହେଉଛି "ଅଭାବ" । ଅଭାବରୁ ହିଁ ସ୍ୱଭାବ ନଷ୍ଟ ହୋଇଥାଏ । ୩୬ କୋଟି ଲୋକଙ୍କୁ ନେଇ ଯେଉଁ ଦେଶ ଗଠିତ ହୋଇଥିଲା, ଆଜି ତାହା ୮୫ କୋଟି । ଜନସଂଖ୍ୟା ବୃଦ୍ଧି ହେତୁ ବାସଗୃହ ଓ ଅନ୍ୟାନ୍ୟ ଆବଶ୍ୟକତାକୁ ମେଣ୍ଟାଇବା ପାଇଁ କ୍ରମେ କ୍ରମେ କୃଷି ଜମି କମିବାରେ ଲାଗିଛି । ଜଙ୍ଗଲ କ୍ଷୟ ହେବାରେ ଲାଗିଛି । ଯେଉଁଠି ଗୋଟିଏ ଡାକ୍ତରଖାନା ଥିଲା, ଆଜି ସେଠି ଦଶଟି ଡାକ୍ତରଖାନା ଆବଶ୍ୟକ ହେଉଛି । ଗୋଟିଏ ଶିକ୍ଷାନୁଷ୍ଠାନ ସ୍ଥାନରେ ଦଶଟି ଶିକ୍ଷାନୁଷ୍ଠାନ ଆବଶ୍ୟକ ହେଉଛି । ଏହିଭଳି ପ୍ରତ୍ୟେକ କ୍ଷେତ୍ରର ଅବସ୍ଥା ନେଡ଼ିଗୁଡ଼ କାହୁଣୀକୁ ବୋହିଗଲାଣି ।

ଏ ପ୍ରସଙ୍ଗରେ ଗୋଟିଏ ସାଧାରଣ କଥା ଆଲୋଚନା କରାଯାଉ । କେବଳ ଗୋଟିଏ ସନ୍ତାନର ଜନନୀ ହୋଇଥିବା ମାଆ ନିଜେ ସୁସ୍ଥ ରହିବା ସାଙ୍ଗକୁ ସନ୍ତାନ ମଧ୍ୟ ସୁସ୍ଥ, ସବଳ ଓ ଦୀର୍ଘାୟୁ ହୋଇଥାଏ । କିନ୍ତୁ, ପାଞ୍ଚ–ସାତଟି ସନ୍ତାନର ଜନନୀ ସାଧାରଣତଃ ରୁଗ୍ଣ ହୋଇଯାଏ । ସନ୍ତାନମାନେ ମଧ୍ୟ ଦୁର୍ବଳ ଶରୀର ଓ ରୁଗ୍ଣ ହୋଇ ଅକାଳ ମୃତ୍ୟୁର ଶୀକାର ହୋଇଥାନ୍ତି । ଅପର କ୍ଷେତ୍ରରେ ଯେ ଗୋଟିଏ ଛୁଆକୁ ମଣିଷ କରିବା ପାଇଁ ବାପା–ମାଆ ଯାହା ଅର୍ଥ ବିନିଯୋଗ କରିଥାନ୍ତେ ସେହି ଅର୍ଥ ପାଞ୍ଚଟି ଛୁଆଙ୍କ ଶିକ୍ଷା ଦାନରେ ବିନିଯୋଗ କଲାବେଳେ ସନ୍ତାନମାନେ ଉପଯୁକ୍ତ ଶିକ୍ଷାର୍ଜନରୁ ବଞ୍ଚିତ ହେବା ସ୍ୱାଭାବିକ ।

ସମାଜର ଅନ୍ୟ ଆଉ ଗୋଟିଏ ଦିଗକୁ ଦୃଷ୍ଟିପାତ କଲେ ଜଣାଯିବ ଯେ ପାଞ୍ଚ ଏକର ଜମିର ମାଲିକ ହୋଇଥିବା ବାପା ନିଜ ସମ୍ପତ୍ତିକୁ ପାଞ୍ଚଟି ସନ୍ତାନଙ୍କ ଭିତରେ ବଣ୍ଟନ କରି ପ୍ରତ୍ୟେକ ସନ୍ତାନଙ୍କୁ ପାଞ୍ଚ ଏକର ଜମିର ମାଲିକ କରି ନପାରି କେବଳ ଏକ ଏକର ଜମିର ମାଲିକ କରିବାକୁ ସକ୍ଷମ ହେଉଛି । ପରବର୍ତ୍ତୀ ପିଢ଼ିର ସନ୍ତାନମାନେ ମଧ୍ୟ ଏହି ନୀତି ଅନୁସାରେ ଏକ ଏକର ଜମିର ମାଲିକ ହୋଇ ନପାରି ଏକ ଏକର ପୈତୃକ ସମ୍ପତ୍ତିର ଏକ ପଞ୍ଚମାଂଶ ଜମିର ମାଲିକ ହୋଇ ପାରୁଛନ୍ତି । ଏଭଳି ପ୍ରତ୍ୟେକ କ୍ଷେତ୍ରରେ ଆଧୋଗତି ହିଁ ଲାଗି ରହୁଛି ।

ବରମେକୋ ଗୁଣୀ ପୁତ୍ରୋ ନଚମୂର୍ଖ ଶତାନ୍ୟପି,
ଏକଶ୍ଚନ୍ଦ୍ର ସ୍ତମୋହନ୍ତି ନଚ ତାରା ଗଣୋପିଚ ।

ସଂସ୍କୃତର ଏହି ନୀତିବାକ୍ୟକୁ ଅନୁସରଣ କରି ଯେଉଁ ଜ୍ଞାନୀଜନମାନେ ନିଜର ସନ୍ତାନଙ୍କୁ ନିଜଠାରୁ ଅଧିକ କରି ଗଢ଼ିବା ଲକ୍ଷ୍ୟରେ କେବଳ ଗୋଟିଏ ଗୁଣବାନ୍ ସନ୍ତାନ ଇଚ୍ଛା କରିଛନ୍ତି, ସେହି କ୍ଷେତ୍ରରେ କେବଳ ଭବିଷ୍ୟତ ବଂଶଧରମାନଙ୍କ ଉନ୍ନତି ସମ୍ଭବ ହୋଇପାରିଛି । କିନ୍ତୁ ଯେଉଁମାନେ ଭବିଷ୍ୟତ ଚିନ୍ତା ନକରି ଏକାଧିକ ସନ୍ତାନର ଜନକ ହେଉଛନ୍ତି, ସେମାନେ ନିଜର ସନ୍ତାନମାନଙ୍କ ଉପଯୁକ୍ତ ଭବିଷ୍ୟତ ଗଢ଼ି ତୋଳିବାରେ ସାଧାରଣତଃ ଅସମର୍ଥ ହୋଇପଡ଼ନ୍ତି । ଫଳତଃ ନିଜ ସନ୍ତାନମାନେ ହିଁ ନିଜ ମୁଣ୍ଡ ଉପରେ ବୋଝ ହୁଅନ୍ତି ଏବଂ ଅବସ୍ଥାଚକ୍ରରେ ଏହି ବୋଝ ଦେଶ ପାଇଁ ବିଭିନ୍ନ ସମସ୍ୟା ସୃଷ୍ଟି କରିଥାଏ । ସବୁ ସମସ୍ୟାର ମୂଳରେ ଜନସଂଖ୍ୟା ବୃଦ୍ଧି ଏକ ମୁଖ୍ୟ କାରଣ ।

ସୁତରାଂ, ଆଜିର ଯୁବ ସମାଜ ଉପସ୍ଥିତ ସମସ୍ୟାଗୁଡ଼ିକୁ ହୃଦୟଙ୍ଗମ କରି ଗଭୀର ଭାବରେ ଚିନ୍ତା କରି ଦେଖନ୍ତୁ – "ଭୁଲ୍ କେଉଁଠି ?" ବୋହିଯିବା ପାଣି ଆଉ ଫେରିବା ସମ୍ଭବ ନୁହେଁ । କିନ୍ତୁ ଆଉ ଅଧିକ ପାଣି ବୋହି ନଯିବା ପାଇଁ ଆମେ ସତର୍କତା ଅବଲମ୍ବନ କରିପାରିବା ନିଶ୍ଚୟ । ଅତଏବ, ଯେଉଁ ଭୁଲ୍ ପାଇଁ ଆଜି ଆମେ ସବୁ ସମସ୍ୟାର ସମ୍ମୁଖୀନ, ସେହି ଭୁଲର ପୁନରାବୃତ୍ତି ନହେଉ ।

ଏଥିପାଇଁ ସରକାରୀ କଳ କିମ୍ବା ସରକାରୀ ଆଇନ୍ ଯଥେଷ୍ଟ ହେବ ନାହିଁ । ଯୁବ ସମାଜ ଏଥିପାଇଁ ସଙ୍କଳ୍ପ ନେବାକୁ ହେବ ।

# ସିଦ୍ଧ ପଞ୍ଚମା ଗଣେଶ

● ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି

ଭାରତ ଉପମହାଦେଶରେ ଓଡ଼ିଶା ଏକ ସର୍ବଧର୍ମ ଧାରଣାର ପବିତ୍ର ଭୂମି। ଏହାର ଗିରୀବନ, ନଦନଦୀ ସବୁଠାରେ ପରମେଶ୍ୱରଙ୍କ ପ୍ରଭୁତ୍ୱ ବିଦ୍ୟମାନ। ହିନ୍ଦୁ ଧର୍ମର ତେତିଶ କୋଟି ଦେବତାଙ୍କ ଆରାଧନା ସ୍ଥଳ ଏହି ଓଡ଼ିଶା ମାଟି। ଏହାର ପାଣି, ପବନ ବି ପୁଣ୍ୟ ଓ ପବିତ୍ରମୟ। ଶୈବ, ଶାକ୍ତ, ବୈଷ୍ଣବ ଓ ବ୍ରାହ୍ମଣ୍ୟ ଧର୍ମର ଆରାଧନା ସ୍ଥଳ ଭାବରେ ଓଡ଼ିଶାର ଖ୍ୟାତି ଯେଉଁଳି ସୁବିଦିତ ସେହିଳି ଗାଣପତ୍ୟ ସମ୍ପ୍ରଦାୟ ଏ ରାଜ୍ୟରେ ସୁବିକଶିତ। କଟକର ସିଦ୍ଧିବିନାୟକ ଜଗନ୍ନାଥ ଧାମ ପୁରୀ କ୍ଷେତ୍ରର ନୃତ୍ୟ ଗଣେଶ, ବଟ ଗଣେଶ, ଉଚ୍ଛିଷ୍ଟ ଗଣେଶ, ଚଣ୍ଡିଖୋଲର ସିଦ୍ଧ ବିନାୟକ, ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିର ଓ ଉଦୟଗିରିରେ ଥିବା ଗଣେଶ ଭଳି ଗଞ୍ଜାମର ସିଦ୍ଧ ଓ ବହୁ ପ୍ରାଚୀନ ବିନାୟକ ପୀଠ ପଞ୍ଚମା ଗଣେଶ ଆଦି ଅନ୍ୟାନ୍ୟ ବହୁ ଅଞ୍ଚଳରେ ଥିବା ବିନାୟକଙ୍କ ମନ୍ଦିର, ପୂଜା ପାର୍ବଣ — ଓଡ଼ିଶାରେ ଗାଣପତ୍ୟ ଧର୍ମର ପ୍ରାଚୀନତାକୁ ଦୃଢ଼ୀଭୂତ କରେ। ଅତୀତରେ ଓଡ଼ିଶା ହିଁ କଳିଙ୍ଗ ନାମ ବହନ କରି ଭାଷା, ସଂସ୍କୃତି, ବୈଭବ, ଧର୍ମ, କଳା, ସ୍ଥାପତ୍ୟକୁ ସାତ ସମୁଦ୍ର ତେର ନଈର ସେପାରିରେ ଥିବା ଅନ୍ୟାନ୍ୟ ଅଞ୍ଚଳକୁ ନୌ–ବାଣିଜ୍ୟ ଆଳରେ ନେଇ ଉପନିବେଶମାନ ଗଢ଼ି ରଖିଥିଲା। କଳିଙ୍ଗର ଅଧିବାସୀ ଥିଲା ସର୍ବଜ୍ଞାନ, ବିଦ୍ୟା ବୁଦ୍ଧି ନିପୁଣ, ଧର୍ମପରାୟଣ ଓ ନିଷ୍ଠାବାନ ମନୁଷ୍ୟ। ସେ ଖାଲି ଧନ ଉପାର୍ଜନ କରି ଖୁସି ହେଉନଥିଲା ତାଙ୍କୁ ପ୍ରଗାଢ଼ ବିଶ୍ୱାସ ଥିଲା ତା'ର ଧର୍ମ ଉପାର୍ଜନରେ। ଧର୍ମର ସମ୍ପ୍ରସାରଣ ପାଇଁ — ସେ ବିଦେଶରେ ନିଜ ଆରାଧ୍ୟ ଦେବାଦେବୀଙ୍କୁ ପ୍ରତିଷ୍ଠା କରିଥିଲା। ଅତୀତର ଚେଲିତୋଳା ବନ୍ଦର ଋଷିକୁଲ୍ୟାଠାରୁ ବାହୁଦା ନଦୀର ମଧ୍ୟାନ୍ତରରୁ ଯାଇ ସେ କାମ୍ବୋଜ ଓ ଯବଦ୍ୱୀପମାନଙ୍କୁ ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ବୌଦ୍ଧ ଓ ଜୈନାଦି ଧର୍ମର ସ୍ରୋତ ବୁହାଇ ଦେଇଥିଲା। ଅଧିକ ମଧ୍ୟ ନେପାଳ, ତିବ୍ବତ, ଚୀନ, ଜାପାନ, ଜାଭା, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓ ଆଦି ଅଞ୍ଚଳରେ ଅନ୍ୟ ହିନ୍ଦୁ ଦେବାଦେବୀଙ୍କ ଭଳି ଗଜାନନ ଗଣେଶଙ୍କ ମନ୍ଦିର ରହିଛି। ଭାରତ ମଧ୍ୟରେ ମହାରାଷ୍ଟ୍ର ଓ [illegible] ଗଣେଶ ପୂଜାର ପ୍ରଧାନ ରାଜ୍ୟ କୁହାଯାଉଥିଲେ ମଧ୍ୟ ଓଡ଼ିଶା ଏ ଦୃଷ୍ଟିରେ କୌଣସି ଭାବେ କମ୍ ନୁହେଁ ବରଂ ଜଗନ୍ନାଥଙ୍କୁ ଗଣେଶ ବେଶରେ ଆରାଧନା କରିବାର ପରମ୍ପରା — ସର୍ବ ଧର୍ମ ସମ୍ପ୍ରଦାୟରେ ସମନ୍ୱୟ ଭାବ ପ୍ରକାଶ କରି ସର୍ବୋତ୍କୃଷ୍ଟ ରାଜ୍ୟରେ ପରିଣତ ହୋଇଛି। ଏ ପରିପ୍ରେକ୍ଷୀରେ ଓଡ଼ିଶାର ସର୍ବ ପ୍ରାଚୀନ ଗଣପତି ପୀଠ "ସିଦ୍ଧ ପଞ୍ଚମା" ଗଣେଶଙ୍କୁ ବନ୍ଦନା କରିବା।

ଗଜ ବକ୍ତ୍ରଂ ସୁରଶ୍ରେଷ୍ଠଂ ଗୁରୁକର୍ଣ୍ଣ ବିଭୂଷିତମ୍,
ପାଶାଙ୍କୁଶ ଧରଂଦେବଂ ବନ୍ଦେ ହଂ ଗଣନାୟକମ୍ ॥

ଦକ୍ଷିଣ ଓଡ଼ିଶାର ମୁଖ୍ୟ ସହର ବ୍ରହ୍ମପୁରଠାରୁ ଦକ୍ଷିଣକୁ ପ୍ରାୟ ବାର କି: ମି: ପାଞ୍ଚ ନମ୍ବର ଜାତୀୟ ରାଜପଥରେ ଗଳାପରେ ରମ୍ଭା ନାମକ ଏକ ବଜାର ଛକ ପଡ଼େ ଏବଂ ସେହି ଛକରୁ ପଶ୍ଚିମ ପଟକୁ ଏକ ଅଣଓସାରିଆ ରାସ୍ତାରେ ଆଉ ପ୍ରାୟ ଦୁଇ କି: ମି: ଅତିକ୍ରମ କଲେ ଏହି ସିଦ୍ଧ ଗଣେଶଙ୍କ ପୀଠ। ଆମ୍ବ, ପଣସ, ପିଜୁଳି ଜଙ୍ଗଲ ବେଷ୍ଟିତ କେରାଣ୍ଡିମାଳ ପାର୍ବତ୍ୟ ଉପତ୍ୟକାର ଏକ ପ୍ରାକୃତିକ ମନୋରମ ପରିବେଶ। ପୀଠସ୍ଥଳ ଏକ ପିଚୁ ରାସ୍ତା ଦ୍ୱାରା ଜାତୀୟ ରାଜପଥ ସହ ସଂଲଗ୍ନ। ପାଞ୍ଚରୁ ସାତ ଏକର ଆୟତନର ଏକ ପାଚେରୀ ଘେରି ରହିଛି ଏହି ପୀଠକୁ। ଭିତରେ ବିରାଟ ଅଶ୍ୱତ୍ଥ ବୃକ୍ଷ କେଉଁ କାଳରୁ ରହି ଆସିଛି। ଗଛ ମୂଳ କୋଡ଼ରେ: ବୃକ୍ଷ ଛାୟାରେ ପ୍ରଭୁ ଗଜାନନ ବିଜେ। ଗଛଟିକୁ କେନ୍ଦ୍ରରେ ରଖି — ଏକ ଛାତ। ଅନ୍ୟ ଦେବାଦେବୀଙ୍କ ମନ୍ଦିର ଭଳି ଗଣେଶଙ୍କ ମନ୍ଦିର ନାହିଁ। ସାମନାରେ ଏକ ବଡ଼ ମଣ୍ଡପ। ମଣ୍ଡପ ଆଗରେ ଏକ ଦୁଇଫୁଟ ଗୋଲେଇ ଓ ପ୍ରାୟ ତିନି ଫୁଟ ଦୈର୍ଘ୍ୟର ଏକ ମୂଷିକ, ଗଣେଶଙ୍କ ବାହାନ। ଗଜାନନଙ୍କ ମୂର୍ତ୍ତି ପାର୍ଶ୍ୱରେ ଶିବଲିଙ୍ଗ ସମେତ ପଞ୍ଚ ଦେବତାଙ୍କ ଫଟୋଚିତ୍ର। ପାର୍ବତୀ, ଦୁର୍ଗା, ନନ୍ଦୀ ଭୃଙ୍ଗୁଟୀ, କାର୍ତ୍ତିକେୟ ଓ ବୃଷଭ ଆଦିଙ୍କର ଚିତ୍ର ସ୍ଥାପିତ ଓ ପୂଜିତ। ବସୁନ୍ଧରାରୁ ଜଳଧାର ପ୍ରଭୁ ଦେବଦେବ ମହାଦେବଙ୍କ ଲିଙ୍ଗ ଉପରେ ସଦା ନିର୍ଗତ। ପୀଠର ଡାହାଣକୁ ଏକ ପୁଷ୍କରିଣୀ। ପୃଷ୍ଠରେ ମହେନ୍ଦ୍ର ପର୍ବତର ଶାଖା କେରାଣ୍ଡିମାଳ ଅତ୍ୟୁଚ୍ଚ ପର୍ବତ ଶ୍ରେଣୀ। ପୀଠସ୍ଥଳକୁ ପ୍ରବେଶ ବେଳେ ଦ୍ୱାରର ଦୁଇକଡ଼ରେ ଦୁଇଟି ସିମେଣ୍ଟ ତିଆରି ହସ୍ତୀ ସ୍ୱାଗତ ଭଙ୍ଗୀରେ ଦଣ୍ଡାୟମାନ। ଦ୍ୱାର ଊର୍ଦ୍ଧ୍ୱରେ ସୂର୍ଯ୍ୟ, ବିଷ୍ଣୁ, ଶିବ, ଦୁର୍ଗା ଓ ଗଣେଶଙ୍କ ମୂର୍ତ୍ତିମାନ ବିରାଜିତ, ଯାହାକି ଏ ପୀଠସ୍ଥଳରେ ସଂଜ୍ଞା "ପଞ୍ଚମା" ବୋଲି ପ୍ରତିପାଦନ କରାଏ।

ପ୍ରଭୁ ଗଜାନନଙ୍କ ପୀଠ — ଏ ଅଞ୍ଚଳରେ ପଞ୍ଚ ଦେବତା ଉପାସନା ଉପରେ ଆଲୋକପାତ କରେ। ପୁରୀ, କୋଣାର୍କ ଓ ଭୁବନେଶ୍ୱରର ଏକାମ୍ର କ୍ଷେତ୍ରକୁ ନେଇ ଯେଉଁଳି ଓଡ଼ିଶାର ସ୍ୱର୍ଣ୍ଣ ତ୍ରିଭୁଜର ସୃଷ୍ଟି ସେହିଳି ଗଞ୍ଜାମର ଏହି ଉପାନ୍ତ ଅଞ୍ଚଳଟିକୁ ସ୍ୱର୍ଣ୍ଣକେଶର କହିବା ଅତ୍ୟୁକ୍ତି ନୁହେଁ। ସମୁଦ୍ର ଉପକଣ୍ଠରେ ଧବଳେଶ୍ୱର ମହାଦେବ, ଅତୀତର ବାଣିଜ୍ୟ ପଣ୍ୟ କେନ୍ଦ୍ର ମଣ୍ଡିଦ୍ୱିର ଜଗନ୍ନାଥ,-ଭଗେଶ୍ୱର, ବାଲାଜୀ, ରାଧାକାନ୍ତଙ୍କ ସମେତ ଜଗତ୍‌ଜନନୀ ମା' ଭଗବତୀ ଭୈରବୀଙ୍କ ମନ୍ଦିର ସହ ବିଭିନ୍ନ ଗ୍ରାମାଞ୍ଚଳରେ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠିତ ହନୁମାନ, ଈଶାନେଶ୍ୱର, ରଘୁନାଥ, ଘଟକେଶ୍ୱର, ମହୁରୀ କାଳୁଆ, ବ୍ରହ୍ମପୁରର

ଠାକୁରାଣୀ ମନ୍ଦିର ଆଦି ସ୍ୱର୍ଣ୍ଣ କଙ୍କଣ ସଦୃଶ୍ୟ ଏ ଅଞ୍ଚଳକୁ ଘେରି ରହି ଏକ ପର୍ଯ୍ୟଟନ ବଳୟ ସୃଷ୍ଟି କରୁଛି ।

ରମ୍ଭାଠାରୁ ପଶ୍ଚିମ ପଟ — ଏହି ଗଣେଶଙ୍କ ପୀଠସ୍ଥଳକୁ ଗଲାବେଳେ ପଞ୍ଚମା ନାମକ ଏକ ଗ୍ରାମ ଦେଇ ଯିବାକୁ ହୁଏ । ପଞ୍ଚମା ଗ୍ରାମର ଠିକ୍ ପଶ୍ଚିମରେ ଦକ୍ଷିଣ–ପୂର୍ବ ରେଳପଥର ରେଳ ଫାଟକ । ଯେ କୌଣସି ବ୍ୟକ୍ତି ବସ୍, ଟ୍ୟାକ୍ସି, ମଟର ସାଇକେଲ ବା ପାଦରେ ବୁଲି ବୁଲି ଏହି ମନ୍ଦିରକୁ ଯାଇପାରିବ ନତୁବା ରେଳରେ ଗଲେ ବ୍ରହ୍ମପୁର ରେଳ ଷ୍ଟେସନ୍‌ଠାରେ ଓହ୍ଲାଇ ବସ୍ ଯୋଗେ ରମ୍ଭାଠାରେ ଅବତରଣ କରି ଆଉ ମାତ୍ର ଦୁଇ କିଲୋମିଟରର ରାସ୍ତା ଅତିକ୍ରମ କଲେ ଏହି ପ୍ରସିଦ୍ଧ ଗଜାନନଙ୍କ ଦର୍ଶନ ପାଇପାରିବେ ।

ଏହି ଗଣେଶଙ୍କୁ ସିଦ୍ଧ ଗଣେଶ ବା ପଞ୍ଚମା ଗଣେଶ କୁହାଯାଏ । "ପଞ୍ଚମା ଗଣେଶ" ନାମକରଣର ଯଥାର୍ଥତା ବିଭିନ୍ନ ଲୋକେ ବିଭିନ୍ନ ଭାବରେ ପ୍ରତିପାଦିତ କରିଥାନ୍ତି । ତନ୍ମଧ୍ୟରୁ ପଞ୍ଚ ଦେବତାଙ୍କ ପୂଜା ତଥା ପୀଠସ୍ଥଳ ହୋଇଥିବାରୁ ପୁଣି ଗଣେଶ ସମସ୍ତଙ୍କ ଅଗ୍ର ପୂଜ୍ୟ ବୋଲି ଏହି ପୀଠସ୍ଥଳକୁ ପଞ୍ଚମା–ଗଣେଶ କୁହାଯାଇଥିବା ଅଧିକ ସମୀଚୀନ ମନେ ହୁଏ । ମନ୍ଦିରର ଅନତି ଦୂରରେ ରହିଥିବା ଜନବସତି ପଞ୍ଚମା ଗ୍ରାମ ବିନାୟକଙ୍କ ପ୍ରତିଷ୍ଠା ପରେ ପୂଜା ଅର୍ଚ୍ଚନା ପାଇଁ ଆବଶ୍ୟକ ପୂଜକମାନଙ୍କ ନିବାସ ଭୂଇଁ ଭାବେ ଗଢ଼ି ଉଠିଥିବା ସମ୍ଭାବନା ଅଧିକ । ଏ ଯାବତ୍ ଏ ଗ୍ରାମରେ ବାସ କରୁଥିବା ରାଉଳ ନାମକ ଏକ ନିର୍ଦ୍ଦିଷ୍ଟ ଜାତିର ଲୋକେ — ଗଣେଶଙ୍କ ପୂଜା କରୁଥିବା ଦେଖାଯାଏ । ଆଜିକାଲି ଅବଶ୍ୟ ରାଉଳମାନଙ୍କ ସହ ବିଶିଷ୍ଟ ଜନଗହଳି ଉତ୍ସବମାନଙ୍କରେ ରାଉଳମାନଙ୍କ ସହ ରଣା (ମୋଳୀ) ଓ ବ୍ରାହ୍ମଣମାନେ ମଧ୍ୟ ଗଣେଶଙ୍କ ପୂଜା କରିଥାନ୍ତି । ପଞ୍ଚମା ଗ୍ରାମ ଓ ଆଖପାଖ ଅଞ୍ଚଳରୁ ସଂଗୃହିତ ମାଡି ଯେ ପ୍ରଥମେ କୁଆଡ଼େ ପାଞ୍ଚଟି ଜାତିର — ପାଞ୍ଚଜଣ ବ୍ୟକ୍ତି (ମୋଡି) ଏହି ଗ୍ରାମରେ ବାସ କରି ଏକ ପଞ୍ଚୁପାଟକ ଗ୍ରାମ ଆରମ୍ଭ କରିଥିଲେ ଓ ପରେ ସେହି ଗ୍ରାମ ପାଖରେ ଥିବା ଗଣେଶଙ୍କୁ ପଞ୍ଚମା ଗଣେଶ ବୋଲି ଚିହ୍ନିତ କରାଗଲା । ଏ ପରିପ୍ରେକ୍ଷୀରେ ଭାଷାକୋଷରେ ଲିଖିତ "ପଞ୍ଚମା" ଶବ୍ଦ ପ୍ରଣିଧାନଯୋଗ୍ୟ । କେତେକ ଐତିହାସିକ ତଥା ଗବେଷକମାନେ କହନ୍ତି ଯେ ଗଣେଶ ଅନାର୍ଯ୍ୟ ଦେବତା ଓ ସମାଜର ଇତର ଜାତିଙ୍କ ଦ୍ୱାରା ପୂର୍ବକାଳରେ ପୂଜିତ ହେଉଥିଲେ । ସେ ମତ ଅନୁସାରେ ଗଣେଶଙ୍କୁ ପଞ୍ଚମା ଗଣେଶ କୁହାଯିବା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ନୁହେଁ । ମହେନ୍ଦ୍ର ପର୍ବତ ଶ୍ରେଣୀରେ ପାଣ୍ଡବମାନଙ୍କ ଅଜ୍ଞାତ ବନବାସର କାହାଣୀ ପୁରାଣରେ ଅଛି । ମହେନ୍ଦ୍ର ପର୍ବତର ଶିଖର ଶ୍ରେଣୀରେ ଭୀମ ଦେଉଳ, କୁନ୍ତି ମନ୍ଦିର ଆଦି ଯେଉଁ ମନ୍ଦିରମାନ ରହିଛି ସେ ସବୁ ପଞ୍ଚୁ ପାଣ୍ଡବମାନଙ୍କ ଦ୍ୱାରା ଆଜକୁ ପାଞ୍ଚ ହଜାରରୁ ଅଧିକା ବର୍ଷ ପୂର୍ବେ ନିର୍ମିତ ହୋଇଥିବା କଥା ଗବେଷକମାନେ କହନ୍ତି । ମହେନ୍ଦ୍ରର ଶାଖା ପର୍ବତ ହେଉଛି କେରାଣ୍ଡିମାଳ । କେରାଣ୍ଡିମାଳ ପାର୍ବତ୍ୟ ଉପତ୍ୟକା ଓ ଜଙ୍ଗଲ ଅଞ୍ଚଳରେ ଗୋକର୍ଣ୍ଣେଶ୍ୱର ମନ୍ଦିର, ସିଦ୍ଧ ଭୈରବୀ ଓ ଏହି ପଞ୍ଚମା ଗଣେଶଙ୍କ ମନ୍ଦିର ବିଦ୍ୟମାନ । ଲୋକେ କୁହନ୍ତି ଯେ, ପାଣ୍ଡବମାନଙ୍କ ଅଜ୍ଞାତ ବାସ ସମୟରେ ଏହି ସବୁ ଦେବାଦେବୀଙ୍କୁ ସ୍ଥାପନା ଓ ପୂଜନ କରାଯାଉଥିଲା ଏବଂ ପଞ୍ଚ ପାଣ୍ଡବଙ୍କ ନାମରୁ ଏହି ପୀଠ ସ୍ଥଳକୁ ପଞ୍ଚମା କୁହାଗଲା । ଏ ଅଞ୍ଚଳର ବହୁ ଦେବାଦେବୀଙ୍କ ଇତିହାସ ବିଶେଷତଃ ପାଣ୍ଡବଙ୍କ ଅଜ୍ଞାତ ବନବାସର ଜନଶ୍ରୁତି ବହନ କରେ ଓ ତା'ର ପରବର୍ତ୍ତୀ ସମୟରେ ଅନେକ ଦିନ ଯାଆନ୍ତେ ଅଶୋକଙ୍କ କଳିଙ୍ଗ ଆକ୍ରମଣରେ ବିପର୍ଯ୍ୟସ୍ତ କଳିଙ୍ଗର ଅସୀମ ଜନକ୍ଷୟ ଓଡ଼ିଶାର ଦେବାଦେବୀ ବିପର୍ଯ୍ୟସ୍ତ ଭାବେ — ବିନା ପୂଜା ଅର୍ଚ୍ଚନାରୁ ଜଙ୍ଗଲାବୃତ ହୋଇ ଲୁଚି ରହିଥିଲେ । କିନ୍ତୁ ସେହି ସେତେବେଳେ ପୁଣି ଲୋକ ଲୋଚନକୁ ଆସି ସ୍ୱୟଂଭୂ ଭାବେ ପ୍ରତିଷ୍ଠା ଓ ପୂଜା ପାଇଥିବା କିଛି ଅଯୁକ୍ତିକର ନୁହେଁ ।

ଗବେଷକ ତଥା ମନୀଷୀମାନଙ୍କ ମତରେ ଶ୍ରୀଗଣେଶଙ୍କ ଅଭିବ୍ୟକ୍ତି ପୁରାଣ ଓ ଐତିହାସିକ ଘଟଣା ସଂଶ୍ଳିଷ୍ଟ । ପାଣ୍ଡବମାନେ ଏହି ଗଣେଶଙ୍କୁ ପୂଜା କରି ସିଦ୍ଧି ପ୍ରାପ୍ତ ହୋଇଥିଲେ ବୋଲି ଗଣେଶଙ୍କୁ ସିଦ୍ଧ ଗଣେଶ କୁହାଗଲା । ପରବର୍ତ୍ତୀ ସମୟରେ ଏହି ସିଦ୍ଧି ଅନ୍ୟାନ୍ୟ ଉପାସକମାନେ ମଧ୍ୟ ପ୍ରାପ୍ତ କରିଥିବାର ଅଜସ୍ର ଦୃଷ୍ଟାନ୍ତ ରହିଛି । ଓଡ଼ିଶା ବିଶେଷତଃ ମୁସଲମାନମାନଙ୍କ ଶାସନରେ ଥିଲାବେଳେ ହିନ୍ଦୁ ଧର୍ମ ଓ ହିନ୍ଦୁ ଦେବାଦେବୀମାନଙ୍କର ଭୂସଂଗୀ କ୍ଷତି ଘଟିଥିଲା । ପୁରୀର ଶ୍ରୀମନ୍ଦିର ଭଳି ଏ ଅଞ୍ଚଳରେ ସେ କାଳରେ ଅତି ପ୍ରସିଦ୍ଧି ଲାଭ କରିଥିବା ଏହି ପଞ୍ଚମା ଗଣେଶଙ୍କ ପୀଠସ୍ଥଳ ମୁସଲମାନମାନଙ୍କ ଦୃଷ୍ଟିରୁ ରକ୍ଷା ପାଇନପାରି ଧ୍ୱଂସ ହୋଇଥିଲା । ସଂଗୃହିତ ତଥ୍ୟାବଳୀରୁ ଜଣାଯାଏ ଯେ, ଏହି ପୀଠ ସମୀପବର୍ତ୍ତୀ ଅଞ୍ଚଳରେ ପିଲିଗଡ଼, ସାମନ୍ତରାପୁର, ଫକୀରପୁର ଓ ଫକୀରତୋଟିଆ ଆଦି ମୁସଲମାନମାନଙ୍କ ଗଡ଼ ରହିଥିଲା ଓ କାଳକ୍ରମେ ସେ ସବୁ ଲୋପ ପାଇଥିବା ଘଟଣା ଏହି ତଥ୍ୟକୁ ସତ୍ୟ ପ୍ରତିପାଦିତ କରାଏ ।

ଅନ୍ୟ କେତେକଙ୍କ ମତରେ ଅତି ପ୍ରାଚୀନ କାଳୀନ ଏହି ପଞ୍ଚମା ସିଦ୍ଧ ଗଣେଶ ପୀଠ ଅଶୋକଙ୍କ କଳିଙ୍ଗ ଆକ୍ରମଣରୁ ହେଉ ବା ତତ୍‌କାଳୀନ ମୁସଲମାନମାନଙ୍କ ହିନ୍ଦୁ ଧର୍ମ ବିଦ୍ୱେଷରୁ ହେଉ ପୂଜା ବିହୀନ ବା ମନ୍ଦିର ଶୂନ୍ୟ ହୋଇ ଅନେକ କାଳ ବିତି ଯାଇଥିଲା । କିନ୍ତୁ ଗଣେଶଙ୍କ ମହିମା ଏତେ ବିଖ୍ୟାତ ଓ ସୁବିଦିତ ଥିଲା ଯେ, ଲୋକେ ଗଣେଶଙ୍କ ସ୍ଥିତିକୁ ଅସ୍ୱୀକାର କରିପାରୁ ନଥିଲେ । ସେହି ବାଟ ଦେଇ ଯିବା ଆସିବା ବେଳେ କୌଣସି ଶୁଭ ଅନୁଷ୍ଠାନ ବେଳେ ଗଣେଶଙ୍କ ଭଗ୍ନ ଲୋପ ପ୍ରାୟ ପୀଠ ସ୍ଥଳରେ ଥିବା ଅଶ୍ୱତ୍ଥ ଓ ବର ଗଛ ଆଡ଼କୁ ଚାହିଁ ଗଣେଶଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ଯୋଦ୍ଧା ବାଟରେ ଯୋଦ୍ଧା କର୍ମରେ ଯାଉଥିଲେ ଏବଂ ଭାଦ୍ରବ ଶୁକ୍ଳ ଚତୁର୍ଥୀ ତିଥିରେ ଏପରି ଅବିଚ୍ଛିନ୍ନ ସ୍ରୁଅ କେରାଣ୍ଡିମାଳ କାନନର ଗିରୀକନ୍ଦର ଦେଇ ଏହି ଦେବ ସ୍ଥାନକୁ ଆସୁଥିଲା । ଏମିତି କିଛି ଦିନ ଅନ୍ତେ ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ବେଳକୁ ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚୀ ଅଭିଯାନ ବେଳେ ଗଣେଶଙ୍କ ପୁନଃ ଆବିର୍ଭାବ ହୋଇଥିବା କଥା ଲୋକମୁଖ ନିସୃତ । ଜଗନ୍ନାଥ ଓ ବଳଭଦ୍ରଙ୍କ କୃପା ନେଇ ରାଜା ପୁରୁଷୋତ୍ତମ ଦ୍ୱିତୀୟ ଥର କାଞ୍ଚୀ ଅଭିଯାନ କାଳରେ ସ୍ୱପ୍ନାଦେଶ ପ୍ରକାରେ ଅତୀତରୁ ଆସୁଥିବା ଏ ଅଞ୍ଚଳରେ ପାଞ୍ଚ ନମ୍ବର ଜାତୀୟ ରାଜପଥକୁ ଲାଗି ରହିଥିବା "ଥାଟବାଟ"ର କଡ଼ରେ ପ୍ରଭୁ ଗଣେଶ ଓ ମା' ଭୈରବୀଙ୍କ ଦର୍ଶନ କରି ଯୁଦ୍ଧଯାତ୍ରା କରି ବିଜୟୀ ହୋଇ ରାଣୀ ପଦ୍ମାବତୀଙ୍କୁ ସଙ୍ଗରେ ନେଇ ଆସିଥିଲେ ।

ପଞ୍ଚମାର ଏହି ପ୍ରସିଦ୍ଧ ସିଦ୍ଧ ଗଣେଶ ପୀଠ ଦୀର୍ଘ ଶୂନ୍ୟ ହୋଇ ଅନେକ ଦିନ ପଡ଼ି ରହିଥିବା ବେଳେ ଜଳନ୍ତରର ରାଜା ଥରେ କୌଣସି ଏକ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତ ଲଭିବା ପାଇଁ ଏହି ମନ୍ଦିରୀ ଜଙ୍ଗଲ ମଧ୍ୟସ୍ଥ ଗଣେଶ ଉପତ୍ୟକାରେ ନିରାହାର ରହି ଏକୋଇଶି ଦିନର ବ୍ରତ ପାଳନ ପୂର୍ବକ ମହିମା ମଣ୍ଡିତ ପ୍ରଭୁ ଗଣପତିଙ୍କୁ ନିର୍ବିଘ୍ନ ଧ୍ୟାନରେ ଥିଲେ । ଶେଷ ଦିନ ନିଶାର୍ଦ୍ଧରେ ରାଜାଙ୍କୁ ସ୍ୱପ୍ନ ଛଳରେ ଗଣେଶ ଦର୍ଶନ ପ୍ରଦାନ କରିଥିଲେ । ଚେତନା ଫେରି ରାଜା ଚାହିଁଲା ବେଳେ ସ୍ୱପ୍ନର ସେହି ଦିବ୍ୟମୟ ଆବକ୍ଷ ଗଣେଶ ମୂର୍ତ୍ତି ଏକ ପ୍ରସ୍ତର ପ୍ରତିମା ରୂପେ ଅଶ୍ୱତ୍ଥ ଗଛ କୋଡ଼ରେ ରହିଥିବା ସ୍ୱଚକ୍ଷୁରେ ଦେଖି ନିଜର

...ଲେ । ରାଜାଙ୍କ ବ୍ୟାଧିବନ୍ତ ଘୃଣିତ ଅଙ୍ଗ ବିକାର ଶୁଖିଁ ଶୁଖିଁ ...ସେ ଗଲା । ସିହିଁ ଦିନ ପ୍ରଭୁ ଗଣେଶଙ୍କ ମହିମା ସିଦ୍ଧ ଗାଥା ...ପାଖ ସର୍ବ୍ୟାପୀବାରେ ଲାଗିଲା । ଏ କଥାର ସତ୍ୟତା — ...ବେ ବି ଜଳନ୍ତର ରାଜ ପରିବାରରୁ ଏଠାକୁ ସମର୍ପିତ ଭୋଗଦ୍ରବ୍ୟ ଓ ...ଣ୍ଡା ମେଣ୍ଟିରୁ ସ୍ପଷ୍ଟ ପ୍ରତିପାଦିତ ।

କେଉଁ ପ୍ରାଚୀନ କାଳରୁ ଗଣେଶ ଚଉଠୀକୁ ଲକ୍ଷ ଲକ୍ଷ ଲୋକଙ୍କ ସମାଗମ ଏହି ପୀଠ ସ୍ଥଳକୁ ହେଉଛି ତା'ର ସଠିକ ବିବରଣୀ ଲୋକ ମନରୁ ବିସ୍ମୃତ । ପୂଜିତ ଗଣେଶଙ୍କ ଶୁଣ୍ଢ ବାମାବର୍ତ୍ତୀ ପୁରୀ ମନ୍ଦିର ତଥା ଉତ୍ତର-ପୂର୍ବ ଆଡ଼କୁ ଦୃଷ୍ଟି । ଆଖପାଖର ଲୋକେ ଏହି ଗଣେଶ ଚଉଠୀ ଦିନ ଫୁଲ, ଫଳ, ନାରୀକେଳ, ମୋଦକ, ଚେଲପଟ ଆଦିରୁ ଏକୋଇଶିଟି ଲେଖାଏଁ ଆଣି ଗଣେଶଙ୍କୁ ଲାଗି ଭୋଗ ସମ୍ଭବମତେ ଏକୋଇଶିଟି ଚତୁର୍ଥୀ ପାଇଁ ଗଣେଶଙ୍କର ନିଷ୍ଠାପର ବ୍ରତ ପାଳନ କରିଥାନ୍ତି । ଶାସ୍ତ୍ର ମତରେ ଏକୋଇଶି ସଂଖ୍ୟା ଗଣେଶଙ୍କର ଅତି ପ୍ରିୟ ବୋଲି ଏକୋଇଶି ଉପଗ୍ରହରେ ଏକୋଇଶି ଦିନ ଏକୋଇଶି ତିଥି ତଥା ଏକୋଇଶି ବାର ବା ଏକୋଇଶିଟି ଗଣେଶ ଚତୁର୍ଥୀର ବ୍ରତ ପାଳନ ବିଧି ଅନୁସୃତ । ଏହି ପୀଠର ପୂଜା ଆରାଧନା ବିଶେଷତଃ ପୂଜକ ଜାତି "ରାଉଳ", "ମାଳୀ", ଓ ବେଳେବେଳେ "ବ୍ରାହ୍ମଣ"ମାନଙ୍କ ଦ୍ୱାରା କରାଯାଏ । ଏତଦ୍ବ୍ୟତୀତ ବରଦା ଚତୁର୍ଥୀ ଯାତ୍ରା ବ୍ୟତୀତ ପ୍ରାୟ ୧୨ ବର୍ଷର ବ୍ୟବଧାନରେ ଗଣପତିଙ୍କ ନବକଳେବର ନୃସିଂହ ଓ ଜଗନ୍ନାଥଙ୍କ ଭଳି ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ଯାତ୍ରା ଏହି ଗଣେଶ ପୀଠରେ ସ୍ମରଣୀୟ । ପୂଜକମାନଙ୍କଠାରୁ ପ୍ରକାଶ ଯେ, ଗଣେଶଙ୍କର ମୂଳ ଲାବଣ୍ୟ ପ୍ରତିମାଠାରେ ଶାସ୍ତ୍ରୋକ୍ତ ପ୍ରକାରେ ଦିଆଯାଇଥିବା ଝୁଣା, ସଦକସ, ଅଗୁରୁ, ଚନ୍ଦନର ଏକ ପ୍ରଲେପ ମନକୁ ମନ ଯେଉଁଦିନ ଖୋଳପା ଆକାରରେ ବାହାରିଯାଏ — ସେହିଦିନ ଗଣେଶଙ୍କ ନବକଳେବର ଯାତ୍ରା ଅନୁଷ୍ଠିତ ହୁଏ । ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କ ଦ୍ୱାରା ବିଧି ଅନୁଯାୟୀ ପୂଜା, ହୋମ, ଯଜ୍ଞ କରାଯାଏ ଓ ପ୍ରୋକ୍ତ ସୁଗନ୍ଧ ସୁବାସିତ ପ୍ରଳୁ ପ୍ରଲେପ ଚିହିଁଙ୍କ ଅଙ୍ଗ ଲାଗି କରାଯାଇଥାଏ ।

ଗଞ୍ଜାମର ଉପାନ୍ତ ଅଞ୍ଚଳରେ ଏକ ନୈସର୍ଗିକ ପ୍ରାକୃତିକ ପରିସର ମଧ୍ୟରେ ରହିଥିବା ଗଜାନନ ପୀଠର ସର୍ବାଙ୍ଗୀନ ଉନ୍ନତି ପାଇଁ ରମ୍ଭା, ଟିକରଡ଼ା, ପଲୋ ଆଦି ଗ୍ରାମର ଲୋକଙ୍କୁ ନେଇ ଏକ କମିଟି କାର୍ଯ୍ୟକରି ଆସୁଛି । ଏ ପୀଠର ବିଶେଷତ୍ୱ ହେଲା — କେଉଁ ପୁରାତନ କାଳରୁ ସମସ୍ତ ଅନୁକୂଳ ଓ ଶୁଭ କର୍ମ, ବିବାହ, ବ୍ରତ ଆଦି ବର୍ଷବ୍ୟାପୀ ଏହି ପୀଠ ସ୍ଥଳରେ ଅନୁଷ୍ଠିତ ହୋଇଥାଏ । ଏହା ବ୍ୟତୀତ ଗ୍ରହ ରିଷ୍ଟ ଶାନ୍ତି ପାଇଁ ବିଶେଷତଃ ଶନିଙ୍କ ପ୍ରକୋପ ଶାନ୍ତ ଅର୍ଥରେ ପଞ୍ଚମା ଗଣେଶଙ୍କଠାରେ ପୂଜାବ୍ରତ ପାଳନରୁ ଖୁବ୍ ଶୀଘ୍ର ସୁଫଳ ସିଦ୍ଧି ପ୍ରାପ୍ତ ହୋଇଥାଏ । ଗଞ୍ଜାମର ଭାରତ ପ୍ରସିଦ୍ଧ ଦାସକାଠି ନୃତ୍ୟର ପ୍ରାରମ୍ଭ, ଏହି ଅଞ୍ଚଳରୁ ପୁଣି ପଞ୍ଚମା ଗଣେଶଙ୍କଠାରୁ ହିଁ ଆରମ୍ଭ କରାଯାଇଥିବାର ପ୍ରମାଣ ରହିଛି । ଚିହିଁଙ୍କୁ ସନ୍ତୁଷ୍ଟ କରିବା ପାଇଁ ଧନ ସମ୍ପଦର ବ୍ୟୟ ସଙ୍କୁଳ ପୂଜାବିଧି ଅନୁସୃତ ନକରି ସରଳ ସ୍ୱଚ୍ଛ ମନ; ଭକ୍ତି ଭାବନା ଓ ସମର୍ପଣର ଧ୍ୟାନ ହିଁ ଏହି ପୀଠର ଏକାନ୍ତ ଆବଶ୍ୟକ ।

*ବାଣିଜ୍ୟ ବିଭାଗ,*
*ଜଟଣୀ ମହାବିଦ୍ୟାଳୟ,*
*ଜଟଣୀ, ପୁରୀ-୭୫୨୦୫୦ ।*



ଭୁବନେଶ୍ୱରଠାରେ ଅନୁଷ୍ଠିତ ମହିଳା ସ୍ୱାସ୍ଥ୍ୟ କର୍ମୀଙ୍କ ୪ର୍ଥ ବାର୍ଷିକୀ ସମ୍ମିଳନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।

# ମଲବେରୀ ତୁତଗଛ ଓ ରେଶମ କୀଟ ପାଳନ

● ସଞ୍ଜୟ କୁମାର ପଣ୍ଡା

ମଲବେରୀ ତୁତଗଛ ଚାଷ ଓ ରେଶମ କୀଟ ପାଳନ ଗୋଟିଏ କୃଷିଭିତ୍ତିକ ଗ୍ରାମୀଣ ଶିଳ୍ପ । ଅନ୍ୟାନ୍ୟ ଅର୍ଥନୈତିକ କାର୍ଯ୍ୟକ୍ରମ ତୁଳନାରେ ଏହାର ବିଶେଷତ୍ୱ ହେଲା ଯେ ଅପେକ୍ଷାକୃତ କମ୍ ଜମିରେ ମଲବେରୀ ତୁତଗଛ ଲଗାଇ କମ୍ ଟଙ୍କା ଖର୍ଚ୍ଚ କରି ବର୍ଷକ ଭିତରେ ଚାଷୀ ରେଶମ କୀଟ ପାଳନ କରିପାରେ ଏବଂ ଅନ୍ୟ ପେଷା ତୁଳନାରେ ବେଶୀ ଲାଭ କରିପାରିବେ । ଦେଶରେ ରେଶମ ଚାଷ ପ୍ରଧାନତଃ କର୍ଣ୍ଣାଟକ, ପଶ୍ଚିମ ବଙ୍ଗ ତଥା ଜାମ୍ମୁ ଓ କାଶ୍ମୀରରେ ବେଶ୍ କିଛି ବର୍ଷରୁ ଚାଲି ଆସୁଅଛି । ରେଶମ ଚାଷର ବିଶେଷ ଅର୍ଥନୈତିକ ଲାଭ ଦୃଷ୍ଟିରୁ ଏହା କ୍ରମଶଃ ଓଡ଼ିଶା ସମେତ ପ୍ରାୟ ସବୁ ରାଜ୍ୟରେ ଆରମ୍ଭ କରାଯାଇଅଛି ।

ରେଶମ ଚାଷର ମୁଖ୍ୟ ଆବଶ୍ୟକତା ହେଲା ମଲବେରୀ ତୁତ ପତ୍ର । ଏହି ପତ୍ର ଖାଇ ରେଶମ କୀଟ ବଢ଼େ ଏବଂ ରେଶମ କୋଷା କରେ । ଏହି କୋଷା କାଟି ରେଶମ ସୂତା ହୁଏ, ଯେଉଁଥିରୁ କି ଦାମୀ ରେଶମ ବା ସିଲ୍‌କ ପାଟ ଲୁଗା ବୁଣାଯାଏ । ମଲବେରୀ ତୁତ ମନ୍ଦାର ପରି ଗୋଟିଏ ବୁଦା ଜାତୀୟ ଗଛ । କାନ୍‌ଭା-୨, ଏସ୍-୫୪ ଓ ଏସ୍-୧ ହେଉଛି ଅତି ଭଲ ଧରଣର ଗଛ ଯେଉଁଥିରୁ କି ବେଶୀ ପତ୍ର ଅମଳ ହୁଏ ।

ପାଣି ଜମୁନଥିବା ପ୍ରାୟ ସବୁ ପ୍ରକାର ଜମିରେ ତୁତଚାଷ କରାଯାଇପାରେ । ତେବେ ଏହି ଗଛ ପାଇଁ ଉର୍ବର ମଟାଳ ଦୋରସା ମାଟି ଭଲ । ଅଧିକ ଅମ୍ଳ ବା କ୍ଷାର ଥିବା ମାଟିରେ ଆବଶ୍ୟକୀୟ ମୃତ୍ତିକା ଉନ୍ନତ ପଦକ୍ଷେପ ନେଇ ଏହି ଚାଷ କରାଯାଇପାରେ । ୨୦ରୁ ୩୦ ଡିଗ୍ରୀ ତାପମାତ୍ରା, ଶତକଡ଼ା ୬୫ରୁ ୮୦ ଭାଗ ଆର୍ଦ୍ରତା ଏବଂ ୧୦୦୦ରୁ ୨୦୦୦ ମି: ମି: ବୃଷ୍ଟିପାତ ତୁତଚାଷ ପାଇଁ ଉପଯୁକ୍ତ ।

ବର୍ଷାଋତୁ ଆରମ୍ଭ ହେବା ପୂର୍ବରୁ ଜମିକୁ ଦେଢ଼ଫୁଟ ଗଭୀରରେ ୨-୩ ଥର ହଳକରି ଏକ ଏକର ଜମିରେ ୧୦ରୁ ୧୨ ଗାଡ଼ି ଗୋବର ଖତ ଦେଇ ଜମି ପ୍ରସ୍ତୁତ କରାଯାଏ । ଅଣଜଳସେଚିତ ଜମିରେ ସାଧାରଣତଃ ୩ ଫୁଟରେ ୩ ଫୁଟ ବ୍ୟବଧାନରେ ୧୫ ଇଞ୍ଚ ଗଭୀର, ଓସାର ଓ ଲମ୍ବାର ଗାତମାନ କରାଯାଏ । ବର୍ଷା ହେବା ସଙ୍ଗେ ସଙ୍ଗେ ପ୍ରତି ଗାତ ତଥା ହିତରେ ୬ରୁ ୮ ମାସ ପୁରୁଣା ତଥା ପ୍ରାୟ ଅଧଇଞ୍ଚ ମୋଟା ୩ରୁ ୪ଟି କଢ଼ ଥିବାର ୬ରୁ ୮ ଇଞ୍ଚ ଲମ୍ବର ଡାଳମାନ ଲଗାଯାଏ । ପ୍ରତି ଗାତରେ ୬ ଇଞ୍ଚ ବ୍ୟବଧାନରେ ତ୍ରିକୋଣରେ ତିନୋଟି କରି ଡାଳ ଲଗାଯାଏ । ଅଣଜଳସେଚିତ ତଥା ପଥୁରିଆ ମାଟିରେ ଡାଳ ପରିବର୍ତ୍ତେ ଚାରାଗଛ ଲଗାଇଲେ ଭଲ ହୁଏ । ସରକାରଙ୍କ ତରଫରୁ ରେଶମ ଚାଷୀମାନଙ୍କୁ ବିନା ମୂଲ୍ୟରେ ତୁତ ଡାଳ ତଥା ଚାରାଗଛ ଯୋଗାଇ ଦିଆଯାଉଅଛି ।

ତୁତଗଛ ଚାଷ ପାଇଁ ଜଳ ଓ ଖତ ତଥା ସାରର ବେଶ୍ ଗୁରୁତ୍ୱ ରହିଛି । ଆବଶ୍ୟକୀୟ ପରିମାଣର ସାର, ଖତ ଦେଲେ ଜଳସେଚିତ ଜମିରେ ବର୍ଷରେ ଏକର ପ୍ରତି ୮,୦୦୦ରୁ ୧୦,୦୦୦ କେ: ଜି: ପତ୍ର ହୁଏ । ସେହିପରି ପ୍ରତି ଏକର ଅଣଜଳସେଚିତ ଜମିରୁ ବର୍ଷକୁ ୪,୦୦୦ରୁ ୫,୦୦୦ କେ: ଜି: ପତ୍ର ମିଳେ । କେ: ଜି: ପିଛା ପତ୍ର କିଣିବାକୁ ୮୦ ପଇସାରୁ ୧ ଟଙ୍କା ଯାଏ ପଡ଼େ । ମଲବେରୀ ଗଛ ସହିତ ପ୍ରଥମ ବର୍ଷରେ ମୁଗ, ବିରି ଆଦି ରବି ଫସଲ ଲଗାଯାଇପାରେ । ଏହା ଫଳରେ ଘାସ କମ୍ ହୁଏ ତଥା ଚାଷୀ କିଛି ଆନୁଷଙ୍ଗୀକ ଆୟ ପାଏ । ଗୋବର ଖତ ସୁବିଧାରେ ନମିଳିଲେ, ଧନିଚା, ସନ୍ ହେମ୍ ଆଦି ଲଗାଇ ଜମିରେ ସବୁଜ ଖତ ପ୍ରୟୋଗ କରାଯାଇପାରେ । ଏହା ଫଳରେ ମାଟିରେ ଜୈବିକ ମାନ ବଢ଼େ ଓ ଅଧିକ ପତ୍ର ଉତ୍ପାଦନ ହୁଏ ।

ଜଳସେଚିତ ଜମିରେ ଜୁଲାଇ ମାସରେ ଲଗାଯାଇଥିବା ଗଛ ଡିସେମ୍ବର ମାସକୁ ରେଶମ ଚାଷୋପଯୋଗୀ ହୋଇଯାଏ । ରେଶମ ପୋକକୁ କଅଁଳିଆ ଡାଳ କାଟି ଅଥବା ପତ୍ର ତୋଳି ଖାଇବାକୁ ଦିଆଯାଏ । ପ୍ରତି ବର୍ଷ ବର୍ଷାଋତୁ ଆରମ୍ଭରେ ମାଟିରୁ ୧୦ ଇଞ୍ଚ ଉପରେ ଡାଳ କଟାଯାଏ । ପରବର୍ତ୍ତୀ ସମୟରେ ୮ ସପ୍ତାହ ଅନ୍ତରରେ ପତ୍ର ମିଳେ । ଥରେ ଗଛ ଲଗାଇଲେ ତହିଁରୁ ପ୍ରାୟ ୧୦ରୁ ୧୫ ବର୍ଷ ପର୍ଯ୍ୟନ୍ତ ପତ୍ର ତୋଳି ରେଶମ ପୋକ ପାଳନ କରାଯାଇପାରେ ।

ସାଧାରଣ ସଁବାଳୁଆ ପରି ରେଶମ କୀଟ (Bombyx mori) ଚାରୋଟି ଅବସ୍ଥା ଯଥା-(୧) ଡିମ୍ବାବସ୍ଥା, (୨) ଲାର୍ଭାବସ୍ଥା, (୩) ପ୍ୟୁପାବସ୍ଥା, (୪) ପ୍ରଜାପତି ଅବସ୍ଥା ଦେଇ ଏହାର ଜୀବନଚକ୍ର ଅତିବାହିତ କରେ । ଜୀବନଚକ୍ର ଭିତ୍ତିରେ ରେଶମ ପୋକକୁ ଏକଚକ୍ରୀ, ଦ୍ୱିଚକ୍ରୀ, ବହୁଚକ୍ରୀ ବୋଲାଯାଏ । କାଶ୍ମୀର ଭଳି ଶୀତପ୍ରଧାନ ଅଞ୍ଚଳରେ ବର୍ଷରେ ଥରେ ଚାଷ ହୋଇପାରେ; ଏହାକୁ ଏକଚକ୍ରୀ ରେଶମ କୁହାଯାଏ । ଅପର ଦିଗରେ କର୍ଣ୍ଣାଟକର 'ମହୀଶୂର' ଜାତି ତଥା ପଶ୍ଚିମ ବଙ୍ଗର 'ନେଷ୍ଟାରୀ' ଜାତିର ପୋକ ବର୍ଷରେ ବହୁବାର (ବହୁଚକ୍ରୀ) ଚାଷ କରାଯାଇପାରେ । ଦ୍ୱିଚକ୍ରୀ ଜାତିର ଡିମ୍ବାବସ୍ଥାର ସୁପ୍ତତା ଉପରେ ଭିତ୍ତିକରି ଏହାକୁ ବର୍ଷରେ ଦୁଇଥର ଚାଷ କରାଯାଇପାରେ । ଏହାକୁ

ଦ୍ୱିଚକ୍ରୀ ଡିମ୍ବପୁଞ୍ଜରୁ ୩୫ କେ: ଜି:ରୁ ଅଧିକ ଧଳାକୋଷା ମିଳୁଥିବା ସ୍ଥଳେ, ସେହି ପରିମାଣର ବହୁଚକ୍ରୀ ଅଣ୍ଡାରୁ ମୋଟେ ୨୦ କେ: ଜି: ହଳଦିଆ ରଙ୍ଗର କୋଷା ମିଳେ । ପୁନଶ୍ଚ ଏକ କେ: ଜି: ସୂତା ପାଇଁ ଯେଉଁଠି ୧୦ କେ: ଜି: ଦ୍ୱିଚକ୍ରୀ କୋଷା ଆବଶ୍ୟକ ହେଉଥିବା ସ୍ଥଳରେ ପ୍ରାୟ ୧୪ କେ: ଜି: ବହୁଚକ୍ରୀ କୋଷାରୁ ଏକ କେ: ଜି: ସୂତା ହୁଏ । ସମସ୍ତ ଦିଗରୁ ବିଚାର କରି ଦ୍ୱିଚକ୍ରୀ ପୋକ ଚାଷ ଅଧିକ ଲାଭଜନକ ହୋଇଥିବାରୁ ଓଡ଼ିଶା ପରି ମଲବେରୀ କ୍ଷେତ୍ରରେ ନୂତନ ରାଜ୍ୟମାନଙ୍କରେ ମୁଖ୍ୟତଃ ଦ୍ୱିଚକ୍ରୀ ରେଶମ କୀଟ ପାଳନ ଉତ୍ସାହିତ କରାଯାଉଛି । ସୂତାକଟା ପାଇଁ ସାଧାରଣତଃ ସଙ୍କର ଦ୍ୱିଚକ୍ରୀ ପୋକ ବ୍ୟବହାର ହୁଏ, କିନ୍ତୁ ବିହନ କୋଷା ପାଇଁ ମୂଳ ଜାତିର ଦ୍ୱିଚକ୍ରୀ ପୋକ ପାଳନ କରାଯାଏ । କାଲିମପାଙ୍ଗ–A, NB—7, NB—4, D—2 ଏବଂ NB—18 କେତୋଟି ଉନ୍ନତ ଦ୍ୱିଚକ୍ରୀ ଜାତି । ଅଗଷ୍ଟ–ସେପ୍ଟେମ୍ବର ମାସରେ ଅଧିକ ଆର୍ଦ୍ରତା ଏବଂ ତାପମାନ ରହୁଥିବାରୁ ସେହି ସମୟରେ ଦ୍ୱିଚକ୍ରୀ, ବହୁଚକ୍ରୀ ସଙ୍କର ଜାତୀୟ ପୋକ ଚାଷ ଆରମ୍ଭ କରାଯାଇଅଛି ।

ପ୍ରାୟ ୧୦ ଦିନ ପ୍ୟୁପାବସ୍ଥାରେ ରହିବା ପରେ କୋଷାରୁ ପ୍ରଜାପତି ବାହାରେ । ସଙ୍ଗମ ପରେ ମାଈ ପ୍ରଜାପତି ୩୫୦ଟିରୁ ୫୦୦ଟି ଅଣ୍ଡା ଦିଏ । ଏହାକୁ ଡିମ୍ବପୁଞ୍ଜ କୁହାଯାଏ । ସୁସ୍ଥ ଭାବେ ଅଣ୍ଡା ପ୍ରସ୍ତୁତି ରେଶମ ଚାଷ ପାଇଁ ଅତ୍ୟାବଶ୍ୟକ । ଓଡ଼ିଶାରେ ରାଜ୍ୟ ସରକାର, କେନ୍ଦ୍ରୀୟ ରେଶମ ବୋର୍ଡ ତଥା ଓଡ଼ିଶା ରାଜ୍ୟ ଟସର ଓ ରେଶମ ସମବାୟ ସମିତି ଆନୁକୂଲ୍ୟରେ ଏହା ପ୍ରସ୍ତୁତ କରାଯାଇ ଚାଷୀମାନଙ୍କୁ ସୁଲଭ ଦରରେ ବିତରଣ କରାଯାଉଅଛି ।

ରେଶମ କୀଟ ଲାର୍ଭାବସ୍ଥାରେ ୨୫ରୁ ୩୦ ଦିନ ମଧ୍ୟରେ ପାଞ୍ଚୋଟି ସ୍ତର ଦେଇ ଗତି କରେ ଏବଂ ୪ ଥର କାତି ଛାଡ଼େ । ଏହି ସମୟରେ ପତ୍ର ଖାଇ ଏହାର ଓଜନ ପ୍ରାୟ ୧୦,୦୦୦ ଗୁଣ ବଢ଼ିଯାଏ । ଏହାର ପାଳନ ପାଇଁ ୨୦ରୁ ୨୮ ଡିଗ୍ରୀ ସେଲ୍‌ସିୟସ୍ ତାପମାନ ତଥା ଶତକଡ଼ା ୭୦ରୁ ୮୫ ଭାଗ ଆର୍ଦ୍ରତା ଆବଶ୍ୟକ । ତାପମାନ ବା ଆର୍ଦ୍ରତା ଏହାଠାରୁ ବେଶୀ ବା କମ୍ ହେଲେ କୀଟ ପାଳନ ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବାକୁ ପଡ଼େ । କୀଟ ପାଳନ ପାଇଁ ଗୋଟିଏ କୀଟ ପାଳନ ଘର କରିବା ଆବଶ୍ୟକ । ଏକ ସମୟରେ ୪୦୦ରୁ ୫୦୦ ଡିମ୍ବପୁଞ୍ଜ ପାଳନ କରିବାକୁ ହେଲେ ୨୮ ଫୁଟରେ ୩୦ ଫୁଟ ବିଶିଷ୍ଟ ଘର ଯଥେଷ୍ଟ । ଏହା ବ୍ୟତୀତ କୀଟ ପାଳନ ପାଇଁ କାଠ ବା ବାଉଁଶ ଥାକ, ପୋକ ପାଳନ ଡାଲା ଫୋମ୍, ରବର, ପାରାଫିନ୍ କାଗଜ, ପତ୍ର କାଟିବା ଛୁରୀ ଆଦି ଅନ୍ୟାନ୍ୟ ଆନୁଷଙ୍ଗିକ ଜିନିଷ ଲାଗେ । ପୋକକୁ ବିଭିନ୍ନ ରୋଗରୁ ରକ୍ଷା କରିବା ପାଇଁ କୀଟ ପାଳନ ଘର ତଥା ଆବଶ୍ୟକୀୟ ଉପକରଣକୁ ଫର୍ମାଲିନ୍ ଦ୍ୱାରା ବିଶୋଧନ କରିବାକୁ ହୁଏ ।

ରେଶମ ଚାଷ ପାଇଁ ଆବଶ୍ୟକୀୟ ଡିମ୍ବପୁଞ୍ଜ ସାଧାରଣତଃ କାଗଜ ଫର୍ଦରେ ଲାଗିହୋଇ ଆସେ । ଅମ୍ଳ ପ୍ରକ୍ରିୟାରେ ଏହାର ସୁପ୍ତତାକୁ ଆଂଶିକ ଦୂର କରି ପାରିଲେ ନିର୍ଦ୍ଦିଷ୍ଟ ଦିନରେ ଅଣ୍ଡା ଫୁଟି ସେଥିରୁ କ୍ଷୁଦ୍ର ଲାର୍ଭା ବାହାରେ । ଗୋଟିଏ ଡିମ୍ବପୁଞ୍ଜର ଅଧିକାଂଶ ଅଣ୍ଡା ଏକ ସମୟରେ ଫୁଟିଲେ ଏହା ପାଳନ କରିବାକୁ ସୁବିଧା ହୁଏ । ଅଣ୍ଡା ଫୁଟିବା ପରେ ତହିଁରୁ ପିମ୍ପୁଡ଼ି ଭଳି କଳା ରଙ୍ଗର ଛୋଟ ଛୋଟ ରେଶମ ପୋକ ବାହାରି କାଗଜ ଫର୍ଦ ଉପରେ ବୁଲନ୍ତି । ତୁତ ଗଛର କଅଁଳିଆ ପତ୍ରକୁ ଛୁରୀ ସାହାଯ୍ୟରେ ୦.୫ରୁ ୧ ବର୍ଗ ସେ: ମି: ଆକାରରେ କାଟି ଏହି କଟା ପତ୍ରକୁ କାଗଜ ଫର୍ଦ ଉପରେ ବୁଲୁଥିବା ପୋକ ଉପରେ ଛିଞ୍ଚି ଦିଆଯାଏ । ପୋକ ସବୁ ପତ୍ର ଉପରେ ଚଢ଼ି ଖାଇବା ଆରମ୍ଭ କଲେ ପୋକ ସହିତ ପତ୍ରକୁ ପର ସାହାଯ୍ୟରେ ଧୀରେ ଧୀରେ କାଗଜ ଫର୍ଦରୁ ପାରାଫିନ କାଗଜ ବିଛା ଯାଇଥିବା ଡାଲା ମଧ୍ୟକୁ ଝାଡ଼ି ଦିଆଯାଏ । ଏହି ସମୟରେ ଆର୍ଦ୍ରତା ତଥା ତାପମାନ ରକ୍ଷା କରିବା ନିହାତି ଆବଶ୍ୟକ । କୀଟର ପ୍ରଥମ ତଥା ଦ୍ୱିତୀୟ ସ୍ତରରେ ବିଶେଷ ଧ୍ୟାନ ତଥା ଯତ୍ନର ଆବଶ୍ୟକତା ହେଉଥିବାରୁ ସାଧାରଣତଃ ପୋକକୁ ଦ୍ୱିତୀୟ ସ୍ତର ପର୍ଯ୍ୟନ୍ତ ଅଧିକ ଯତ୍ନରେ ରଖାଯାଇ ତୃତୀୟ ସ୍ତରରେ ପହଞ୍ଚିବା ପରେ ଚାଷୀଙ୍କୁ ବିତରଣ କରାଯାଏ । ଏହାକୁ ଚକି ପୋକ କହନ୍ତି । ସରକାରୀ ସାହାଯ୍ୟରେ ପରିଚାଳିତ ବିଭିନ୍ନ ଚକି ପାଳନ କେନ୍ଦ୍ରରୁ ସୁଲଭ ଦରରେ ଚକି (୩ୟ ସ୍ତରର) ପୋକ ବିତରଣ କରାଯାଉଅଛି । ଏହି ଚକି ପୋକ ସମବାୟ ସମିତି ମାଧ୍ୟମରେ ମଧ୍ୟ ଚାଷୀମାନେ ନିଜେ କରିପାରିବେ ।

ପୋକର ଚତୁର୍ଥ ତଥା ପଞ୍ଚମ ସ୍ତର ପାଳନ ମୁଖ୍ୟତଃ ଚାଷୀମାନେ ନିଜେ କରନ୍ତି । ପୋକ ଖାଉଥିବା ମୋଟ ପତ୍ରର ଶତକଡ଼ା ୯୦ରୁ ୯୫ ଭାଗ ପତ୍ର ଏହି ଦୁଇଟି ସ୍ତରରେ ଖାଇଥାଏ । ଏହି ସ୍ତରରେ ପୋକକୁ ଯଥେଷ୍ଟ ପରିମାଣରେ ଖାଇବାକୁ ଦେବାକୁ ହୁଏ । ଦିନରାତି ୨୪ ଘଣ୍ଟାରେ ୪ରୁ ୫ ଥର ପତ୍ର ଦେବାକୁ ହୁଏ । ପୋକ ବଢ଼ିବା ପାଇଁ ଏହାକୁ ଗହଳି ନକରି ବେଶୀ ସଂଖ୍ୟକ ଡାଲା ବ୍ୟବହାର କରାଯାଏ । ପାଳନ ସମୟରେ ଡାଲା ତଥା ଅନ୍ୟାନ୍ୟ ସରଞ୍ଜାମ ପରିଷ୍କାର ରଖିବା ଦରକାର । ଆବଶ୍ୟକତା ଅନୁଯାୟୀ ପୋକ ଉପରେ ରେଶମ କୀଟ ଔଷଧ ଦେବାକୁ ହୁଏ ।

ପୋକ ପଞ୍ଚମ ସ୍ତରର ଶେଷ ଅବସ୍ଥାରେ ପହଞ୍ଚିଲେ ଖାଇବା ବନ୍ଦ କରି ଦିଏ ତଥା ରଙ୍ଗ ହଳଦିଆ ଦେଖାଗଲେ ପୋକ ପାଳନ ହୋଇଛି ବୋଲି ଜଣାଯାଏ । ଏହି ସମୟରେ କୋଷା ବାନ୍ଧିବା ପାଇଁ ପୋକ ଆବଶ୍ୟକୀୟ ସ୍ଥାନ ଖୋଜେ । ଏହି ଅବସ୍ଥାରେ ସାଧାରଣତଃ ପାକଳ ପୋକକୁ ଉଠାଇ ବାଉଁଶ ଚାଡ଼ିରେ ରଖାଯାଏ । ୨୪ ଡିଗ୍ରୀ ତାପମାନ ତଥା ଶତକଡ଼ା ୬୦ରୁ ୭୦ ଆର୍ଦ୍ରତା କୋଷା ବାନ୍ଧିବା ପାଇଁ ଉତ୍ତମ ।

ସାଧାରଣତଃ କୋଷା ବାନ୍ଧିବା ୪–୫ ଦିନରେ ଶେଷ ହୋଇଥାଏ । ୫ ଦିନ ପରେ କୋଷାକୁ ଚନ୍ଦ୍ରିକାରୁ ଅମଳ କରାଯାଏ । ଭଲ କୋଷାରୁ ଯାଆଁଳା କୋଷା, ପତଳା କୋଷା, ଦାଗିକୋଷା, ଫମ୍ପା କୋଷାକୁ ବଛାଯାଏ । ଭଲ କୋଷାକୁ ସୂତାକଟା କେନ୍ଦ୍ରକୁ ପଠାଯାଏ । ସୂତା କାଟିବାରେ ଡେରିହେଲେ କୋଷାରୁ ପ୍ରଜାପତି ବାହାରି ଯିବାର ସମ୍ଭାବନା ରହେ । ଏହି ପରିସ୍ଥିତିରେ କୋଷାକୁ ଖରାରେ ଶୁଖାଇ ଅଥବା ଗରମ ବାଷ୍ପ ଯନ୍ତ୍ର ଦ୍ୱାରା ଗରମ କରି କୋଷା ମଧ୍ୟରେ ଥିବା ପ୍ୟୁପାକୁ ମାରିଦେବା ଆବଶ୍ୟକ ହୋଇଥାଏ ।

ଦ୍ୱିଚକ୍ରୀ ସଙ୍କର ରେଶମ କୀଟ ପାଇଁ ଡିମ୍ବପୁଞ୍ଜ ପିଛା ପ୍ରାୟ ୫ କେ: ଜି: ପତ୍ର ଲାଗେ । ଫଳତଃ ଏକ ଏକର ଜମିରେ ତୁତଗଛ କରି ରେଶମ କୀଟ ପାଳନ କଲେ ପ୍ରାୟ ୨୪୦ କେ: ଜି: କୋଷା ମିଳିବ । ଏହାର ଦାମ୍ ପ୍ରାୟ ୨୦,୦୦୦ ଟଙ୍କା ହେବ । ଚାଷ ସଙ୍ଗେ ସଙ୍ଗେ ରେଶମ ସୂତା କାଟିଲେ ଆନୁଷଙ୍ଗିକ ଆୟ ମିଳିବ ।

ରେଶମ ଚାଷର ଉପରୋକ୍ତ ଲାଭ ଦୃଷ୍ଟିରୁ ଓଡ଼ିଶାର କୋରାପୁଟ, ଫୁଲବାଣୀ, କଳାହାଣ୍ଡି, ଗଞ୍ଜାମ, ପୁରୀ, କେଉଁଝର, ସମ୍ବଲପୁରରେ ଅନୁକୂଳ ପରିବେଶ ଥିବା ୩୨ଟି ବ୍ଲକ୍‌ରେ ସପ୍ତମ ଯୋଜନାରେ ଆରମ୍ଭ କରାଯାଇଥିଲା । ୧୯୯୧-୯୨ ଆର୍ଥିକ ବର୍ଷରେ ଉପରୋକ୍ତ ଜିଲ୍ଲା ସମେତ ଢେଙ୍କାନାଳ ଓ ମୟୂରଭଞ୍ଜ ଜିଲ୍ଲାମାନଙ୍କରେ ସର୍ବମୋଟ ୪୦ଟି ବ୍ଲକ୍‌ରେ ଏହି ଚାଷ ଆରମ୍ଭ କରାଯାଇଅଛି । ତୁତ ଗଛ ଚାଷ ତଥା ରେଶମ କୀଟ ପାଳନ ପାଇଁ ଆବଶ୍ୟକ ଗୃହ ତଥା ସରଞ୍ଜାମ ଯୋଗାଇ ଦେବା ପାଇଁ ଏହି ବ୍ଲକ୍‌ମାନଙ୍କରେ ଅଣଜଳସେଚିତ ଜମିରେ ଅଧା ଏକରରେ ୯,୦୦୦ ଟଙ୍କା ତଥା ଏକ ଏକରରେ ୧୫,୬୦୦ ଟଙ୍କା ଏବଂ ଜଳସେଚିତ ଜମିରେ ଏକ ଏକରରେ ୨୬,୫୦୦ ଟଙ୍କା ଏବଂ ଦୁଇ ଏକରରେ ୬୪,୬୦୦ ଟଙ୍କା ଦେବାର ବ୍ୟବସ୍ଥା ଅଛି । ରେଶମ ଚାଷ କରିବା ନିମନ୍ତେ ଆଦିବାସୀ, ହରିଜନ, କ୍ଷୁଦ୍ର ତଥା ନାମମାତ୍ର ଚାଷୀଙ୍କୁ ଆଇ଼ ଆର୍‌଼ ଡି଼ ପି଼, ଜବାହର ରୋଜଗାର ଯୋଜନା ତଥା ଅନ୍ୟାନ୍ୟ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ୫,୦୦୦ ଟଙ୍କା ପର୍ଯ୍ୟନ୍ତ ଅନୁଦାନ ତଥା ବ୍ୟାଙ୍କର ସୁଲଭ ହାରରେ ଋଣ ଯୋଗାଇ ଦିଆଯାଉଅଛି । ଏହି ଚାଷ କରିବା ପାଇଁ ୧୯୯୦-୯୧ ବର୍ଷଠାରୁ ବୟନ ଶିଳ୍ପ ଓ ହସ୍ତତନ୍ତ ବିଭାଗ ତରଫରୁ ଏକ ବିଶେଷ କାର୍ଯ୍ୟକ୍ରମ ଶୁରୁ କରାଯାଇଅଛି । ଏହି କାର୍ଯ୍ୟକ୍ରମରେ ଚାଷୀମାନଙ୍କୁ ଅଧ ଏକରକୁ ୨,୫୦୦ ଟଙ୍କା, ଏକ ଏକରକୁ ୪,୦୦୦ ଟଙ୍କା ଓ ଦୁଇ ଏକରକୁ ୮,୦୦୦ ଟଙ୍କା ଅନୁଦାନ ଆକାରରେ ଦିଆଯାଉଅଛି । ଏହି ବ୍ଲକ୍‌ମାନଙ୍କରେ ଚାଷୀମାନଙ୍କୁ ସାହାଯ୍ୟ କରିବାକୁ ଜଣେ ଲେଖାଏଁ ରେଶମ ସମ୍ପ୍ରସାରଣ ଅଧିକାରୀମାନଙ୍କୁ ରଖାଯାଇଅଛି । ଏହା ବ୍ୟତୀତ ୧-୪-୧୯୮୭ଠାରୁ ଗଞ୍ଜାମ ଜିଲ୍ଲାର ମୋହନା ତଥା ଆର଼ଉଦୟଗିରି ବ୍ଲକ୍ ଦ୍ୱୟରେ କେନ୍ଦ୍ରୀୟ ରେଶମ ବୋର୍ଡ ସହାୟତାରେ ଗୋଟିଏ ବିଶେଷ ଦ୍ୱିତଳୀ ରେଶମ ଉନ୍ନୟନ ପ୍ରକଳ୍ପ ଆରମ୍ଭ କରାଯାଇଅଛି । ସର୍ବୋପରି ୧୯୮୯ରେ ବିଶ୍ୱ ବ୍ୟାଙ୍କ ସହାୟତାରେ ଶୁରୁ ହୋଇଥିବା ଜାତୀୟ ରେଶମ ଯୋଜନାରେ ଓଡ଼ିଶାର କୋରାପୁଟ ଜିଲ୍ଲାକୁ ଅନ୍ତର୍ଭୁକ୍ତ କରାଯାଇଅଛି ।

ରାଜ୍ୟରେ ଉତ୍ପାଦିତ ହେଉଥିବା କୋଷାର ଉଚିତ ମୂଲ୍ୟ ପାଇଁ ନିମନ୍ତେ ରାଜ୍ୟ ଟସର ଓ ରେଶମ ସମବାୟ ସମିତି ବିଶେଷ ପଦକ୍ଷେପ ନେଉଛି । ରେଶମ ଚାଷୀମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ପ୍ରାଥମିକ ରେଶମ ସମବାୟ ସମିତିମାନ ଗଠନ କରାଯାଇଅଛି ।

ଏହା ନିଃସନ୍ଦେହ ଯେ 'ରେଶମ ଚାଷ ଗୋଟିଏ ଲାଭଜନକ ବ୍ୟବସାୟ । ଓଡ଼ିଶା ଭଳି ଉନ୍ନତଶୀଳ ରାଜ୍ୟମାନଙ୍କରେ ବେକାରୀ ତଥା ଦାରିଦ୍ର୍ୟ ସମସ୍ୟାର ସମାଧାନରେ ଏହି ଚାଷ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବ । ବିଶ୍ଳେଷଣରୁ ଜଣାଯାଏ ଯେ, ରେଶମ ଲୁଗା ଦାମର ପ୍ରଧାନ ଅଂଶ ତୁତ ପତ୍ର ଚାଷ ଓ ରେଶମ କୀଟ ପାଳନ କରୁଥିବା ଚାଷୀ ପାଖକୁ ଯାଏ । ଫଳତଃ ଏହି ଚାଷ ମାଧ୍ୟମରେ ସହରର ଧନରାଶି ଗ୍ରାମୀଣ ଅଞ୍ଚଳକୁ ଯାଇ ସମାଜରେ ଅର୍ଥନୈତିକ ସାମଞ୍ଜସ୍ୟ ଆଣିବାରେ ସାହାଯ୍ୟ କରେ । ଅଧ ଏକରରୁ ଦୁଇ ଏକର ଜମି ନିଜ ପରିବାରର ଶ୍ରମ ଦେଇ ଏହି ଚାଷ କରିବା ଲାଭଜନକ ହୋଇପାରୁ ଥିବାରୁ ଏହି ଚାଷର ଦେଶରେ ଓ ଗ୍ରାମାଞ୍ଚଳରେ ଯଥେଷ୍ଟ ଆଦର ରହିବ । ଏହି ଚାଷ ଫଳରେ ପ୍ରତ୍ୟକ୍ଷ ଲାଭର ସଙ୍ଗେ ସଙ୍ଗେ ମୃତ୍ତିକା, ଜଳ ତଥା ପରିବେଶ ସଂରକ୍ଷଣ ଏବଂ ଦେଶର ରପ୍ତାନି ଆମଦାନୀଜନିତ ବିଦେଶୀ ମୁଦ୍ରା ରକ୍ଷା ମାଧ୍ୟମରେ ବିଶେଷ ପରୋକ୍ଷ ଲାଭ ମଧ୍ୟ ହୋଇପାରିବ ।

---

ନିର୍ଦ୍ଦେଶକ,
ବୟନ ଶିଳ୍ପ, ଓଡ଼ିଶା



ରବୀନ୍ଦ୍ର ମଣ୍ଡପଠାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ "କଣ୍ଢେଇ ନାଚ" ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଓ ବିଭାଗୀୟ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ।

# ସଂସ୍କୃତି – କାଲି ଓ ଆଜିର

● ଅଧ୍ୟାପକ ଡକ୍ଟର ସମର ମୁଦାଲି

ଯେକୌଣସି ଜାତିର ପ୍ରଗତି ନିଜ ଜାତିର ଅତୀତ ଗୌରବକୁ ବାଦ୍ ଦେଇ ଅଗ୍ରଗତି କରିବା ଅସମ୍ଭବ । ଓଡ଼ିଶାର ସଂସ୍କୃତି, ସଭ୍ୟତା, ପରମ୍ପରା ତଥା ଜାତୀୟତାର ଗଭୀରତା ଅତ୍ୟନ୍ତ ବ୍ୟାପକ ଓ ମହାନ । ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ରସାଏଙ୍କଠାରୁ ଆରମ୍ଭକରି ଗୋପବନ୍ଧୁ ତଥା ଉତ୍କଳଗୌରବ ମଧୁସୂଦନଙ୍କ ପର୍ଯ୍ୟନ୍ତ ଏ ଜାତି ଯେଉଁ ଆତ୍ମତ୍ୟାଗ ତଥା ବୀରତ୍ୱର ପରିଚୟ ପ୍ରଦାନ କରି ଆସିଛି ତାର ପଟାନ୍ତର ନାହିଁ । କେବଳ ରାଜନୈତିକ କ୍ଷେତ୍ରରେ ନୁହେଁ କଳା, ସ୍ଥାପତ୍ୟ, ଶିଳ୍ପ, ବାଣିଜ୍ୟ, ସାହିତ୍ୟ, ଧର୍ମ ଓ ଦର୍ଶନରେ ଯୁଗ ଯୁଗ ଧରି ଏଜାତିର ଅନବଦ୍ୟ ଅବଦାନ ଭାରତୀୟ ସଂସ୍କୃତିକୁ ସମୃଦ୍ଧ କରିଛି । ଅତୀତରେ ଖାରବେଳ, ନରସିଂହ ଦେବ, କପିଳେନ୍ଦ୍ର ଦେବ, ଅନଙ୍ଗଭୀମ ଦେବ ଏବଂ ଶାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ଭୀମ ଭୋଇ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ପ୍ରତିଭାର ପରାକାଷ୍ଠାର ପରିଚୟ ଦେଇ ଯାଇଛନ୍ତି ତାହା ଚିରସ୍ମରଣୀୟ ।

ଏ ଜାତିର ସକଳ ପଦ୍ଧତି ତଥା ପୂଜା ପାର୍ବଣ ଏବଂ ସାଂସ୍କୃତିକ ପରମ୍ପରାଗୁଡ଼ିକ ଏପରି ଭାବରେ ଗୋଟିକ ପରେ ଗୋଟିଏ ସଂଶ୍ଳିଷ୍ଟ ଯେ ଏହା ପ୍ରଚ୍ଛନ୍ନ ଭାବରେ ସାଂସ୍କୃତିକ ଚେତନାର ସ୍ତରକୁ ଉନ୍ନତ ତଥା ପରିପୁଷ୍ଟ କରିବାରେ ସର୍ବଦା ସହାୟକ ହୋଇ ଆସିଛି । ବହୁମୁଖୀ ଉତ୍ସବ, ପର୍ବ ପର୍ବାଣୀ ଆମ ଜନଜୀବନର ସହଚର ଓ ଓଡ଼ିଶାବାସୀଙ୍କ ବିଚିତ୍ର ସଂସ୍କୃତିର ନିଦର୍ଶନ । ପର୍ବ ପାଳନ ଓ ଉତ୍ସବ ଅନୁଷ୍ଠାନ ମୂଳରେ ମାନବର ମନସ୍ତାତ୍ତ୍ୱିକ ପ୍ରେରଣା ହିଁ ଉଲ୍ଲେଖ ଯୋଗ୍ୟ । ମାନବ ଜୀବନକୁ ସରସ ସୁନ୍ଦର କରିବା ସହିତ ବ୍ୟକ୍ତି ଚିତ୍ତରେ ସତ୍ ପ୍ରବୃତ୍ତି ସାହସ ତଥା କାର୍ଯ୍ୟନିପୁଣ କରିବାରେ ଏହା ସାହାଯ୍ୟ କରିଥାଏ । ସରଳ ବିଶ୍ୱାସୀ ମଣିଷ ହୃଦୟରେ ଶୁଦ୍ଧପୂତ ଆନନ୍ଦ ମାଧ୍ୟମରେ ଏକନିଷ୍ଠତା ସଦ୍‌ଚିନ୍ତା ଆଣିବା ନିମନ୍ତେ ଏହା ଏକ ପ୍ରଚେଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯେକୌଣସି ଜାତିର ଗୌରବ, ମହତ୍ତ୍ୱ ଏବଂ ଆଦର୍ଶ ହିଁ ପରିଲକ୍ଷିତ ହୋଇଥାଏ ସେ ଜାତିର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟ ସମଗ୍ରୁ । ଯେଉଁ ଜାତିର ସଂସ୍କୃତି ଯେତେ ମହାନ୍ ସେ ଜାତି ସେତିକି ସୁଦୃଢ଼ । କଳିଙ୍ଗପୁତ୍ର ଓଡ଼ିଆ ପୁଅ ତା'ର ଗୌରବ ସାହସିକତା ବଳ ବିକ୍ରମ କେବଳ ଆଜି ନୁହେଁ ବହୁ ପୂର୍ବରୁ ପ୍ରମାଣିତ କରି ଆସିଛି । ନିଜର ଶିଳ୍ପୀମାନଙ୍କର କାର୍ଯ୍ୟ ବଳରେ ସମୁଦ୍ର ବେଳାଭୂମିରେ ଗଢ଼ି ତୋଳିଛି ଏ ଜାତିର ଅମର କୃତି କୋଣାର୍କ । କୋଣାର୍କର କମନୀୟ ମୂର୍ତ୍ତି ମଧ୍ୟରେ କେବଳ ଉତ୍କଳୀୟ ଶିଳ୍ପକଳାର ନିଖୁଣ ଚିତ୍ର ଦେଖିବାକୁ ମିଳେ ନାହିଁ । ଉତ୍କଳୀୟ କଳାର ଉତ୍କର୍ଷ ମାଧ୍ୟମରେ ଉତ୍କଳୀୟ ସଂସ୍କୃତିର ଗୌରବ ମଧ୍ୟ ସୂଚିତ ହେଉଅଛି । କେବଳ ଏତିକି ନୁହେଁ ଜାତିର ମହତ୍ତ୍ୱ ରଖିବା ପାଇଁ, ଏ ଜାତିକୁ ବଳିଷ୍ଠ କରିବା ନିମନ୍ତେ ନିଜେ ଜଗନ୍ନାଥ ପାଇକ ବେଶ ସାଜିବାକୁ କୁଣ୍ଠା ପ୍ରକାଶ କରି ନାହାନ୍ତି । କଳିଙ୍ଗ ଯୁଦ୍ଧରେ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରି ସମାଜକୁ ନୂତନ ଦିଗ୍‌ଦର୍ଶନରେ ଆଲୋକିତ କରିବାରେ ଏ ଜାତିର ପ୍ରୟାସ ମଧ୍ୟ କମ୍ ନୁହେଁ । ଶହ ଶହ ବର୍ଷ ତଳେ ମଧ୍ୟ ଏ ଜାତି ସମୁଦ୍ର ବକ୍ଷରେ ନିଜର ବୀରତ୍ୱ ନିଦର୍ଶନ ଦର୍ଶାଇ ଜାଭା, ବୋର୍ଣ୍ଣିଓ, ସୁମାତ୍ରା ବାଲିଦ୍ୱୀପ ଆଦି ବହୁ ଦେଶ ସହିତ ବାଣିଜ୍ୟ ବ୍ୟବସାୟ କରିବାକୁ ସମର୍ଥ ହୋଇପାରିଛି । ସୁତରାଂ ଆମ ସଭ୍ୟତା ଓ ସଂସ୍କୃତି କେବଳ ପ୍ରାଚୀନ ନୁହେଁ, ବହୁ ଭାବରେ ବିଚିତ୍ର ବର୍ଣ୍ଣାଢ୍ୟ ଓ ବିକଶିତ ମଧ୍ୟ ।

ବାସ୍ତବିକ ଏ ଜାତିର ଗୌରବୋଜ୍ଜ୍ୱଳ ଇତିହାସ ପ୍ରତ୍ୟେକଙ୍କୁ ମନ୍ତ୍ରମୁଗ୍ଧ କରିଦିଏ କିନ୍ତୁ ଦୁଃଖ ଲାଗେ ଆଜି ଜାତିର ସୁପ୍ତ ଅବସ୍ଥାକୁ ଦେଖି । କାହିଁ ସେ ପାଇକ, କାହିଁ ସେ ଧରମା, କାହିଁ ସେ ସାଧବ ପୁଅ ଯେଉଁମାନଙ୍କୁ ନେଇ ଆଜି ଏ ଜାତି ଗର୍ବିତ । ଆଧୁନିକତା ନାମରେ ପ୍ରାଚୀନ ସଂସ୍କୃତି ନିଷ୍ପ୍ରଭତା ଆଜି ମାନବର ଏକ ସହଜାତ ପ୍ରବୃତ୍ତି ହୋଇଗଲାଣି । ଜୀବନ ଯାତ୍ରା ପଥର ପ୍ରାଚୀନତାକୁ ମେଲାଣି ଦେଇ ଦେଲାଣି ଏ ଜାତି । ପ୍ରାଚୀନ ସଂସ୍କୃତି ତଥା ଐତିହ୍ୟକୁ କ୍ରମଶଃ ଭୁଲି ବସିଲାଣି । ନିଦ୍ରା, ତନ୍ଦ୍ରା ଓ ତାମସିକତାର ଘୋର କାର୍ପଣ୍ୟ ଭାବର ଅନ୍ଧକାରମୟ ଗହ୍ୱର ଭିତରେ ଏ ଜାତି ସ୍ୱାର୍ଥରୁଦ୍ଧ ହେବାକୁ ବସିଲାଣି । ଆଜିର ଏ ଅବସ୍ଥା ପାଇଁ ଦାୟୀ କିଏ? ଏ ଜାତି କେବଳ ଅତୀତକୁ ଝୁରିବା ସାର ହେଉଛି । କିଏ କାହାକୁ ବା କହିବ ? କିଏ କାହାକୁ ଉଠାଇବ ? କିଏ ଦେବ ପ୍ରେରଣା ? କିଏ ହେବ ପଥ ପ୍ରଦର୍ଶକ ?? ଏମିତି ଯଦି ହୁଏ କ୍ରମେ ଏ ମହାନ୍ ସଂସ୍କୃତି ତଥା ଐତିହ୍ୟର ବିଲୋପ ସାଧନ ହିଁ ହେବ ।

ସୁଖର କଥା, ମାନ୍ୟବର ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଉଦ୍ୟମରେ ଏବେ ଦିଲ୍ଲୀ ସହରରେ ସାହିତ୍ୟ ସଂସ୍କୃତି ସମାରୋହ ଅନୁଷ୍ଠିତ ହୋଇ ଓଡ଼ିଆ ସଂସ୍କୃତିକୁ ଦିଲ୍ଲୀ ଦରବାରରେ ଉପସ୍ଥାପନା କରି ପ୍ରଶଂସନୀୟ ପଦକ୍ଷେପ ନେଇଛନ୍ତି । ପାଇକ

ଆଖଡ଼ାକୁ ପୁନରୁଦ୍ଧାର କରିବା ପାଇଁ ଏକ ପାଇକ ଏକାଡେମୀ ବା ବେପାମଗିକ ଶାରୀରିକ ଶିକ୍ଷା ଏକାଡେମୀ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ଅତୀତର ବୋଇତ ବାଣିଜ୍ୟ ପରମ୍ପରାକୁ ପୁନର୍ଜୀବିତ କରିବା ପାଇଁ ଆଗାମୀ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ପାରାଦ୍ୱୀପରୁ ବାଲିଦ୍ୱୀପ ଅଭିମୁଖେ ଏକ ଜାହାଜ ପଠାଇବାକୁ ନିଷ୍ପତ୍ତି ନେଇ ମୁଖ୍ୟମନ୍ତ୍ରୀ ବିଜୁ ବାବୁ ଆଉ ଏକ ଅଭିନବ ପଦକ୍ଷେପ ନେଇଛନ୍ତି ।

ଏହିଭଳି ଗୋଟିକ ପରେ ଗୋଟିଏ ପଦକ୍ଷେପ ନିଆଯାଉ ପରିଲେ ଏ ଜାତି ଅଚିରେ ତା'ର ଗୌରବ ଫେରାଇ ଆଣି ପାରିବ, ସେଥିରେ ସନ୍ଦେହ ନାହିଁ ।

୫୯/...
...



ଓଡ଼ିଶା ହାଇକୋର୍ଟର ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ବନଓ୍ୱାରୀଲାଲ୍ ହଂସାରିଆ ନବ ନିଯୁକ୍ତ ବିଚାରପତିମାନଙ୍କୁ ଶପଥ ପାଠ କରାଉଛନ୍ତି ।

# ସାଧାରଣ ବଣ୍ଟନ ବ୍ୟବସ୍ଥା ଓ ଯୋଗାଣ ନିଗମ

● ଶ୍ରୀ ଭଗୀ ପ୍ରସାଦ ଦାସ

ଓଡ଼ିଶା ରାଜ୍ୟ ଯୋଗାଣ ନିଗମର ଅଭ୍ୟୁଦୟ ବା ୧୯୮୦ ମସିହା ସେପ୍ଟେମ୍ବର ମାସ ୩ ତାରିଖଠାରୁ ଏହା ରାଜ୍ୟ ସରକାରଙ୍କ ମନୋନୀତ ସଂସ୍ଥା ଭାବରେ ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ଚାଉଳ, ଚିନି, ଗହମ ଓ ଆମଦାନୀକୃତ ଖାଇବା ତେଲର ପାଇକାରୀ ବଣ୍ଟନ କରି ଆସୁଅଛି । ରାଜ୍ୟ ସରକାରଙ୍କ ଖାଦ୍ୟ ଓ ଯୋଗାଣ ବିଭାଗରୁ ପ୍ରାପ୍ତ ମାସିକ ଅଂଶ ଭିତ୍ତିରେ ଉପରୋକ୍ତ ସାମଗ୍ରୀଗୁଡ଼ିକର ବଣ୍ଟନ ଭାର ଯୋଗାଣ ନିଗମ ଉପରେ ନ୍ୟସ୍ତ କରାଯାଇଛି । ଭାରତୀୟ ଖାଦ୍ୟ ନିଗମର ଭଣ୍ଡାରଗୁଡ଼ିକରୁ ଯୋଗାଣ ନିଗମ ଚାଉଳ, ଗହମ, ଚିନି ଏବଂ ଷ୍ଟେଟ୍ ଟ୍ରେଡ଼ିଂ କର୍ପୋରେସନରୁ ଆମଦାନୀକୃତ ଖାଇବା ତେଲ ଉଠାଇଥାଏ । ୧୯୯୧-୯୨ ଆର୍ଥିକ ବର୍ଷ (୧-୪-୧୯୯୧ ଠାରୁ ୩୧-୩-୧୯୯୨) ମଧ୍ୟରେ ନିମ୍ନଲିଖିତ ପରିମାଣର ଅତ୍ୟାବଶ୍ୟକୀୟ ପଦାର୍ଥ ଯଥା-ଚାଉଳ, ଗହମ ଓ ଚିନି ୩୦୨ଟି ବେସରକାରୀ ଓ ୩୨ଟି ସରକାରୀ ଷ୍ଟୋରେଜ୍ ଏଜେଣ୍ଟଙ୍କ ମାଧ୍ୟମରେ କାରବାର କରାଯାଇଛି ।

| | ସରକାରଙ୍କଠାରୁ ବଣ୍ଟିତ ଅଂଶ (ମେଟ୍ରିକ୍ ଟନ୍ ହିସାବରେ) | ଉଠାଯାଇଥିବା ପରିମାଣ (ମେଟ୍ରିକ୍ ଟନ୍ ହିସାବରେ) | ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ବଣ୍ଟା ଯାଇଥିବା ପରିମାଣ |
|---|---|---|---|
| ଚାଉଳ | ୧,୬୩,୮୧୦·୮ | ୧,୩୦,୬୬୬·୪୧୫ | ୧,୨୦,୪୮୬·୭୯୫ |
| ଗହମ | ୨୬୩,୯୪୭ | ୨,୨୬,୨୨୬·୬୬୫ | ୨,୨୪,୯୪୨·୦୬୮ |
| ଚିନି | ୧,୫୫,୫୦୨·୦୦ | ୧,୬୭,୫୦୫·୦୦୭ | ୧,୫୫,୩୮୯·୨୧ |

ଏହି ଆର୍ଥିକ ବର୍ଷ ମଧ୍ୟରେ ୧,୫୪୦ ଟନ୍ ଆମଦାନୀକୃତ ଖାଇବା ତେଲ ଷ୍ଟେଟ୍ ଟ୍ରେଡ଼ିଂ କର୍ପୋରେସନ୍‌ର ଭଣ୍ଡାରରୁ ଉଠାଯାଇ ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ୧୫ଟି ପରିବହନ ତଥା ଭଣ୍ଡାରଣ ପ୍ରତିନିଧିମାନଙ୍କ ଜରିଆରେ ଖାଉଟୀମାନଙ୍କୁ ବଣ୍ଟନ କରାଯାଇଥିଲା । ଉପରୋକ୍ତ ପରିମାଣ ୧୯୯୧ ମସିହା ମାର୍ଚ୍ଚ ମାସରେ ବଳକା ଅଂଶ । ୧୯୮୬ ମସିହା ଡିସେମ୍ବର ପହିଲାଠାରୁ ରାଜ୍ୟର ୯ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ୧୧୮ଟି ମଣ୍ଡଳରେ ଚାଉଳ ଓ ଗହମ ସରକାରୀ ମୂଲ୍ୟରେ ଆଦିବାସୀମାନଙ୍କୁ ଯୋଗାଇ ଦେବାର ଦାୟିତ୍ୱ ଯୋଗାଣ ନିଗମ ଉପରେ ନ୍ୟସ୍ତ କରାଯାଇଛି ।

ଏହି ଯୋଜନାରେ ଚାଉଳ, ଗହମ ସରକାରୀ ମୂଲ୍ୟରେ ପାଇବା ପାଇଁ ଆଦିବାସୀମାନଙ୍କୁ ପଡ଼ିକାର୍ଡ଼ ଯୋଗାଇ ଦିଆଯାଇଛି । ୧୯୯୧ ଅପ୍ରେଲ ମାସଠାରୁ ୧୯୯୨ ମାର୍ଚ୍ଚ ମାସ ମଧ୍ୟରେ ସରକାର ଦେଇଥିବା ୧,୮୪,୯୦୬·୬୦ ଟନ୍ ଚାଉଳ ଓ ୪୫,୭୦୬ ଟନ୍ ଗହମ ମଧ୍ୟରୁ ୧,୬୮,୬୯୯·୮୦୨ ଟନ୍ ଓ ୪୪,୧୧୧,୭୧୧ ଟନ୍ ଗହମ ଉଠାଯାଇଛି ଏବଂ ତନ୍ମଧ୍ୟରୁ ୧,୧୭,୧୬୩·୬୪୫ ଟନ୍ ଚାଉଳ ଓ ୪୪,୦୪୯·୯୩୫ ଟନ୍ ଗହମ ଆଦିବାସୀମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ଏହି ଯୋଜନାକୁ ୧-୬-୧୯୯୨ ତାରିଖଠାରୁ ଅଣସମନ୍ୱିତ ଆଦିବାସୀ ଉନ୍ନୟନ ପ୍ରକଳ୍ପ ଅଞ୍ଚଳର ୨୬ଟି ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ଅନ୍ତର୍ଗତ ବ୍ଲକ୍‌ମାନଙ୍କୁ ସମ୍ପ୍ରସାରିତ କରାଯାଇଛି । ଭାରତ ସରକାର ଉପରୋକ୍ତ ବ୍ଲକ୍‌ମାନଙ୍କ ପାଇଁ ଅତିରିକ୍ତ ଖାଦ୍ୟଶସ୍ୟ କୋଟା ମଧ୍ୟ ଦେଇଅଛନ୍ତି । ସରକାର ମଧ୍ୟ ଅଣସମନ୍ୱିତ ଆଦିବାସୀ ଉନ୍ନୟନ ପ୍ରକଳ୍ପ ଅଞ୍ଚଳର ଦୁଃସ୍ଥ ନିରାଶ୍ରୟ ଯଥା—ବାର୍ଦ୍ଧକ୍ୟ ଭତ୍ତା ପ୍ରାପ୍ତ ବ୍ୟକ୍ତି, ବିଧବା ଭତ୍ତା ପ୍ରାପ୍ତ ନାରୀ, ଶାରୀରିକ ବିକଳାଙ୍ଗ ବ୍ୟକ୍ତି, ମୁକ୍ତିତ ଦାଦନ ଶ୍ରମିକ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦ୍ୱାରା ପରିଚାଳିତ ଅନାଥାଶ୍ରମର ଅନ୍ତେବାସୀମାନଙ୍କ ସ୍ୱତନ୍ତ୍ର ସହାୟତା ପାଇଁ ଏକ ଅନୁଦାନ ଯୋଜନା କାର୍ଯ୍ୟକାରୀ କରିଛନ୍ତି । ଏ ପର୍ଯ୍ୟନ୍ତ ଉପରୋକ୍ତ ବ୍ୟକ୍ତିମାନଙ୍କୁ ୧୪,୧୮୫,୬୯୮ ଟନ୍ ଚାଉଳ କି: ଗ୍ରା: ପ୍ରତି ୨ ଟଙ୍କା ମୂଲ୍ୟରେ ସ୍ୱତନ୍ତ୍ର ପଡ଼ିକାର୍ଡ଼ ଜରିଆରେ ବଣ୍ଟନ କରାଯାଇଛି ।

ଆମଦାନୀକୃତ ଖାଇବା ତେଲର କ୍ରମବର୍ଦ୍ଧିଷ୍ଣୁ ଚାହିଦାର ପୂରଣ ତଥା ଖୋଲା ବଜାରରେ ଏହାକୁ ସହଜଲଭ୍ୟ କରିବା ଉଦ୍ଦେଶ୍ୟରେ ଯୋଗାଣ ନିଗମ ଓଡ଼ିଶା ରାଜ୍ୟ ତୈଳବୀଜ ଉତ୍ପାଦକ ସଙ୍ଘ ସହଯୋଗରେ ଅପ୍ରେଲ ୧୯୯୧ରୁ ଅକ୍ଟୋବର ୧୯୯୧ ମସିହା ମଧ୍ୟରେ ସାଧାରଣ ବଣ୍ଟନ ଯୋଜନା ଜରିଆରେ ୧,୨୫୭ ଟନ୍ ପାମୋଲିନ୍ ତେଲ ଛୋଟ ପ୍ୟାକେଟ୍‌ରେ ବଣ୍ଟନ କରିଛି ।

ଖୋଲା ବଜାରରେ ଡାଲିର ମୂଲ୍ୟ ବୃଦ୍ଧିକୁ ପ୍ରତିରୋଧ କରିବା ପାଇଁ ଯୋଗାଣ ନିଗମ ୩୦୦ ଟନ୍ ଏ: ଡି: ପି: ଡାଲି ଜ୍ୟ ପାଇଁ ଚୁକ୍ତି କରି ୧୯୯୧-୯୨ ମଧ୍ୟରେ ୨୨୨ ଟନ୍ ସାଧାରଣ ବଣ୍ଟନ ପ୍ରଣାଳୀ ଜରିଆରେ ଏବଂ ଆଦର୍ଶ ସୁଲଭ ମୂଲ୍ୟ ଦୋକାନମାନଙ୍କରେ କିଲୋ ପ୍ରତି ୯ ଟଙ୍କା ଦରରେ ବଣ୍ଟନ ପାଇଁ ଉଠାଇଥିଲା । ସର୍ବସାଧାରଣରେ ଏହି ଡାଲିକୁ କମ୍ ମୂଲ୍ୟରେ ବିକ୍ରି ଅଧିକ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଯୋଗାଣ ନିଗମ ଏହାକୁ ସାଧାରଣ ବଣ୍ଟନର ଏକ ସ୍ଥାୟୀ ସାମଗ୍ରୀ କରିବାର ପ୍ରସ୍ତାବ କରିଛି ।

ବଜାରରେ ଦାମ୍ ଅତ୍ୟଧିକ ଥିବା ସମୟରେ ପରିମିତ ମୂଲ୍ୟରେ ଆଳୁ ପ୍ରାପ୍ତିକୁ ସୁନିଶ୍ଚିତ କରିବା ପାଇଁ ଯୋଗାଣ ନିଗମ ଆଳୁ ସଂଗ୍ରହ

କାର୍ଯ୍ୟ ହାତକୁ ନେଇଅଛି । ଏହି ବର୍ଷ ନିଗମ ନାଫେଡ୍ (NAFED) ମାଧ୍ୟମରେ ଓ ସିଧାସଳଖ ଭାବେ ୧,୨୭୭ ଟନ୍ ଆଳୁ ସଂଗ୍ରହ କରିଛି ଏବଂ ଯଥା ସମୟରେ ବଜାରକୁ ଛାଡ଼ିବା ପାଇଁ ଦୁଇଟି ଶୀତଳ ଭଣ୍ଡାରରେ ରଖାଯାଇଛି । ପଡ଼ିକାର୍ଡ଼ ନଥିବା ଓ ବସ୍ତି ବାସିନ୍ଦାମାନଙ୍କୁ ଉଚିତ୍ ମୂଲ୍ୟରେ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଇ ଦେବା ଉଦ୍ଦେଶ୍ୟରେ ନିଗମ ନିମ୍ନଲିଖିତ ସ୍ଥାନମାନଙ୍କରେ ଆଦର୍ଶ ସ୍ତରର ମୂଲ୍ୟ ଦୋକାନମାନ ଖୋଲିଛି ।

| କ୍ରଂ | ସ୍ଥାନର ନାମ | ଆଦର୍ଶ ସ୍ତରର ମୂଲ୍ୟ ଦୋକାନର ସଂଖ୍ୟା |
|---|---|---|
| (୧) | ବାଲେଶ୍ୱର (ସହର) | ୧ |
| (୨) | କଟକ (ସହର) | ୨ |
| (୩) | ଭୁବନେଶ୍ୱର (ସହର) | ୪ |
| (୪) | ପୁରୀ (ସହର) | ୧ |
| (୫) | ବଲାଙ୍ଗୀର (ସହର) | ୧ |
| (୬) | କଳାହାଣ୍ଡି (ଭବାନୀପାଟଣା) | ୧ |
| (୭) | କେନ୍ଦୁଝର (ସହର) | ୧ |
| (୮) | ସମ୍ବଲପୁର (ସହର) | ୧ |
| (୯) | ବ୍ରହ୍ମପୁର (ଗଞ୍ଜାମ) | ୧ |
| (୧୦) | ସୁନ୍ଦରଗଡ଼ (ସହର) | ୧ |
| (୧୧) | ଢେଙ୍କାନାଳ | ୧ |
| (୧୨) | ଭଦ୍ରକ | ୧ |
| | ମୋଟ | ୧୭ |

ପ୍ରତିଷ୍ଠାପିତ ଦୋକାନଗୁଡ଼ିକ ବ୍ୟତୀତ ଯଥେଷ୍ଟ ସଂଖ୍ୟାରେ ଅନୁରୂପ ବିକ୍ରୟ କେନ୍ଦ୍ର ରାଜ୍ୟର ଅନ୍ୟାନ୍ୟ ସ୍ଥାନରେ ଆବଶ୍ୟକତାନୁସାରେ ଖୋଲାଯିବାର ପ୍ରସ୍ତାବ ରହିଛି ।

ଆଦିବାସୀମାନଙ୍କର ଦ୍ୱାରଦେଶରେ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯଥା–ଚାଉଳ, ଗହମ, ଚିନି, କିରୋସିନି ଓ ଜନତା ଧୋତି ଇତ୍ୟାଦିକୁ ପହଞ୍ଚାଇବା ଉଦ୍ଦେଶ୍ୟରେ ହାଟ ବିକ୍ରି ଯୋଜନା ରାଜ୍ୟର ୮ଟି ଜିଲ୍ଲାର ୧୧୭ଟି ମଣ୍ଡଳରେ ୨୦ଟି ଅଣସମନ୍ୱିତ ଆଦିବାସୀ ଉନ୍ନୟନ ପ୍ରକଳ୍ପ ଅଞ୍ଚଳରେ ଭ୍ରାମ୍ୟମାଣ ଯାନ ସାହାଯ୍ୟରେ କାର୍ଯ୍ୟକାରୀ କରାଯାଉଛି । ନିଗମର ନିଜସ୍ୱ ୪୩ଟି ଯାନ ଓ ଅବଶିଷ୍ଟ ଭଡ଼ାରେ ଅଣାଯାଇ ମୋଟ ୫୪ଟି ଯାନ ସାହାଯ୍ୟରେ ଏହି ଯୋଜନା କାର୍ଯ୍ୟକାରୀ କରାଯାଉଛି । ୧୯୯୨–୯୩ ମଧ୍ୟରେ ଆହୁରି ୧୨ଟି ଯାନ କ୍ରୟ ହେବାର ପ୍ରସ୍ତାବ ଅଛି । ଗୋଟିଏ ସୁଚିନ୍ତିତ ଯୋଜନାନୁସାରେ ଭ୍ରାମ୍ୟମାଣ ଯାନ ସହିତ ଆବଶ୍ୟକୀୟ ସଂଖ୍ୟକ କର୍ମଚାରୀମାନେ ପ୍ରଧାନ ହାଟଗୁଡ଼ିକୁ ଯାଇ ସରକାରୀ ନିର୍ଦ୍ଧାରିତ ମୂଲ୍ୟରେ ଅତ୍ୟାବଶ୍ୟକୀୟ ପଦାର୍ଥଗୁଡ଼ିକୁ ଆଦିବାସୀମାନଙ୍କୁ ବିକ୍ରି କରିଥାନ୍ତି । ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରାଯାଉଥିବା ଅଞ୍ଚଳରେ ସ୍ୱତନ୍ତ୍ର ପଡ଼ିକାର୍ଡ଼ମାନ ଦିଆଯାଇଛି । ଏହି ଯୋଜନା ସେମାନଙ୍କର ଆବଶ୍ୟକତା ପୂରଣ ଦିଗରେ ଯଥେଷ୍ଟ ଅଗ୍ରଗତି କରିବା ସଙ୍ଗେ ସଙ୍ଗେ ଅସାଧୁ ବ୍ୟବସାୟୀମାନଙ୍କ ଅତ୍ୟାଚାରରୁ ମଧ୍ୟ ସୁରକ୍ଷା ପ୍ରଦାନ କରିଅଛି ।

## ଧାନ ସଂଗ୍ରହ :

ଅଭାବଗ୍ରସ୍ତ ଅବସ୍ଥାରେ ଧାନ ବିକ୍ରି ଅଭିଯୋଗର ନିରାକରଣ ପାଇଁ ଏବଂ ବଳକା ଧାନ ସଞ୍ଚୟ ପାଇଁ ଯୋଗାଣ ନିଗମ କୋରାପୁଟ, ଗଞ୍ଜାମ, ଫୁଲବାଣୀ, କଳାହାଣ୍ଡି ଓ ସମ୍ବଲପୁରଜିଲ୍ଲାମାନଙ୍କରେ କ୍ରୟ କେନ୍ଦ୍ରମାନ ଖୋଲି ସିଧାସଳଖ ଧାନ ସଂଗ୍ରହ କରିବାର କାର୍ଯ୍ୟ ହାତକୁ ନେଇଛି । ଏ ପର୍ଯ୍ୟନ୍ତ ୧୦,୨୮୬·୨୩୯ ଟନ୍ ଧାନ ସଂଗ୍ରହ କରାଯାଇଛି ଏବଂ ୫,୭୬୦·୦୮୬ ଟନ୍ ଚାଉଳ ଭାରତୀୟ ଖାଦ୍ୟ ନିଗମକୁ ହସ୍ତାନ୍ତର କରାଯାଇଛି ।

ଚଳିତ ଖରିଫ୍ ବର୍ଷରେ ରାଜ୍ୟ ସରକାରଙ୍କ ଖାଦ୍ୟ ଓ ଯୋଗାଣ ବିଭାଗ ଯୋଗାଣ ନିଗମକୁ ଧାନ ସଂଗ୍ରହ ପାଇଁ ନିର୍ଦ୍ଦେଶିତ କରିଛନ୍ତି । ୬୫,୦୦୦ ଟନ୍ ଧାନ ସଂଗ୍ରହ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଭାରତୀୟ ଖାଦ୍ୟ ନିଗମର ଉପ ପ୍ରତିନିଧି ଭାବେ ପ୍ରତ୍ୟେକ ଜିଲ୍ଲାରେ କ୍ରୟ କେନ୍ଦ୍ରମାନ ଖୋଲି ଏବଂ ଚାଉଳ କଳ ମାଲିକମାନଙ୍କ ଜରିଆରେ ଧାନ ସଂଗ୍ରହ କରିବା ପାଇଁ ଯୋଗାଣ ନିଗମ ସ୍ଥିର କରିଛି ।

| | ନିଗମ ଦ୍ୱାରା ସିଧାସଳଖ କ୍ରୟ କରାଯାଇଥିବା ପରିମାଣ | ଚାଉଳକଳ ମାଲିକ | ଭାରତୀୟ ଖାଦ୍ୟ ନିଗମକୁ ... | |
|---|---|---|---|---|
| (୧) କୋରାପୁଟ | [illegible] | [illegible] | [illegible] | [illegible] |
| (୨) କଳାହାଣ୍ଡି | | [illegible] | | [illegible] |
| (୩) ଗଞ୍ଜାମ | [illegible] | [illegible] | [illegible] | [illegible] |
| (୪) ସମ୍ବଲପୁର | | [illegible] | | [illegible] |
| (୫) ଫୁଲବାଣୀ | | [illegible] | | [illegible] |
| | [illegible] | [illegible] | [illegible] | [illegible] |

## ୧୯୯୨–୯୩ ମସିହା ପାଇଁ ଯୋଜନା ଓ କାର୍ଯ୍ୟକ୍ରମ :

(କ) ଚାଉଳ, ଗହମ, ଚିନି ଓ ପାମୋଲିନ୍ ତେଲର ବେସରକାରୀ ହୋଲସେଲ୍ ଏଜେଣ୍ଟମାନଙ୍କ ଜରିଆରେ ବଣ୍ଟନ ବ୍ୟବସ୍ଥାରେ ପରିଲକ୍ଷିତ ତ୍ରୁଟିକୁ ଏଡ଼ାଇବା ପାଇଁ ଯୋଗାଣ ନିଗମ ପର୍ଯ୍ୟାୟକ୍ରମେ ହୋଲସେଲ ଏଜେନ୍ସି ହାତକୁ ନେବା ପାଇଁ ଅନୁଧ୍ୟାନ କରୁଛି । ପରୀକ୍ଷାମୂଳକ ଭାବରେ କଳାହାଣ୍ଡି, ଫୁଲବାଣୀ, କୋରାପୁଟ ଜିଲ୍ଲାମାନଙ୍କର କେତେକ ବ୍ଲକ୍ ଓ ଭୁବନେଶ୍ୱର ନଗରପାଳିକା ଅଞ୍ଚଳର କେତେକ ... ବର୍ତ୍ତମାନ ପାଇଁ ଉତ୍ତୋଳନ ପାଇଁ ଉତ୍ତୋଳନ ଓ ବଣ୍ଟନ ଉଦ୍ଦେଶ୍ୟରେ ... ହାତକୁ ନେଇଛି । ପ୍ରତ୍ୟେକ ଜିଲ୍ଲା ଓ ଉପଖଣ୍ଡର ... ମହକୁମାରେ ଭଣ୍ଡାର ଗୃହ ଖୋଲିବାର ବ୍ୟବସ୍ଥା ସମ୍ପର୍କରେ ପରୀକ୍ଷା ନିରୀକ୍ଷା ଚାଲିଛି ।

(ଖ) ୧୯୯୨–୯୩ ବର୍ଷରେ ଧାନ ସଂଗ୍ରହ ଓ କୃଷକମାନଙ୍କୁ ସହାୟକ ମୂଲ୍ୟ ଦେବା କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବା କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ସଂଗ୍ରହ ନିଷ୍ପାଦନମାନଙ୍କ ...

ସମସ୍ତ ରାଜ୍ୟରେ ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ ନିଆଯାଇଛି ।

ଜନତା ଆଦର୍ଶ ସୁଲଭ ମୂଲ୍ୟ ଦୋକାନ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଛି । ଏଣୁ ୧୯୯୩–୯୪ ବର୍ଷରେ ପ୍ରତ୍ୟେକ ଜିଲ୍ଲା ଓ ସବ୍‌ଡିଭିଜନ୍‌ର ସଦର ମହକୁମାରେ ଏହି ଦୋକାନ ଖୋଲିବାର ପ୍ରସ୍ତାବ ରହିଛି ।

ରାଜ୍ୟର ଦରିଦ୍ର ଉପଭୋକ୍ତାମାନଙ୍କୁ ଅତ୍ୟାବଶ୍ୟକୀୟ ସାମଗ୍ରୀ ବିତରଣ କରିବା ଦିଗରେ ଯୋଗାଣ ନିଗମର ବଜାର ହସ୍ତକ୍ଷେପ କାର୍ଯ୍ୟକୁ ସମ୍ପ୍ରସାରିତ କରାଯିବ । ଏହି ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ଆବଶ୍ୟକ ଢାଞ୍ଚା ଉଭୟ ମୁଖ୍ୟ କାର୍ଯ୍ୟାଳୟ ଓ ଶାଖା କାର୍ଯ୍ୟାଳୟମାନଙ୍କରେ ସୃଷ୍ଟି କରାଯାଇଛି ।

ଭ୍ରାମ୍ୟମାଣ ଦୋକାନ ଯୋଜନାର ଲୋକପ୍ରିୟତା ଦୃଷ୍ଟିରୁ ଓ ଆଦିବାସୀମାନଙ୍କ ଦ୍ୱାରା ଦେଶରେ ଅତ୍ୟାବଶ୍ୟକ ପଦାର୍ଥ ପହଞ୍ଚାଇବା ଉଦ୍ଦେଶ୍ୟରେ ନିଗମ ନିଜସ୍ୱ ଯାନ ସଂଖ୍ୟାକୁ ଅଧିକ ସମ୍ପ୍ରସାରଣ କରିବା ପାଇଁ ପ୍ରସ୍ତାବ କରିଛି ।

*ସାଧାରଣ ପରିଚାଳକ,*
*ଓଡ଼ିଶା ଯୋଗାଣ ନିଗମ, ଭୁବନେଶ୍ୱର ।*




ମାହାଙ୍ଗା କୁସୁପୁରଠାରେ କଟକ କର୍ମଜୀବୀ ସାମ୍ବାଦିକ ସଂଘର ପ୍ରଥମ ବାର୍ଷିକୀ ଉତ୍ସବରେ ରାଜ୍ୟ ଯୋଗାଣ ବିଭାଗ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉଦ୍‌ବୋଧନ ଦେଉଛନ୍ତି (୨୩/୬) ।

# ସମ୍ପୂର୍ଣ୍ଣ ସାକ୍ଷରତା ଅଭିପ୍ରେରଣା ପାଇଁ ଛଉନୃତ୍ୟ



● କାଶୀନାଥ ବାରିକ

୧୯୯୧ ମସିହା ଜନଗଣନା ହିସାବରୁ ଜଣାଯାଏ ଆମ ଦେଶର ସାକ୍ଷରତା ହାର ଶତକଡ଼ା ୫୨ ଭାଗ ଓ ଆମ ଓଡ଼ିଶାର ସାକ୍ଷରତା ହାର ୪୮ ଭାଗ । ସାର୍ବଜନୀନ ପ୍ରାଥମିକ ଶିକ୍ଷା ଭାରତର ସମ୍ବିଧାନରେ ମୌଳିକ ନୀତି ହୋଇଥିଲେ ମଧ୍ଯ ଅଦ୍ୟାବଧି ଆମ ଲୋକସଂଖ୍ୟାର ପ୍ରାୟ ଅର୍ଦ୍ଧାଧିକ ନିରକ୍ଷର । ପରିତାପର ବିଷୟ ଯେ, ପୁରୁଷ ତୁଳନାରେ ସ୍ତ୍ରୀ ଲୋକମାନେ ଆହୁରି ନିମ୍ନସ୍ତରରେ ଅଛନ୍ତି । ହାରାହାରି ଏକ ତୃତୀୟାଂଶ ସ୍ତ୍ରୀ ଲୋକ ଲେଖିପଢ଼ି ଜାଣନ୍ତି ନାହିଁ । ଏହି ନିରକ୍ଷରତା ଅଭିଶାପ ଭଳି କାମ କରି ସମାଜର ଏକ କଳଙ୍କର ସ୍ୱାକ୍ଷର ବହନ କରିଛି । ନିରକ୍ଷର ଲୋକେ ସବୁବେଳେ ଅସାଧୁ ବ୍ୟକ୍ତିଙ୍କର ଶୋଷଣରେ ଅହରହ ପୀଡ଼ିତ । ଏଥି ପାଇଁ ସରକାର ସମ୍ପୂର୍ଣ୍ଣ ସାକ୍ଷରତାର ଅଭିଯାନ ଆରମ୍ଭ କରିଛନ୍ତି । ଏ ପର୍ଯ୍ୟନ୍ତ ରାଜ୍ୟର ୪ ଗୋଟି ଜିଲ୍ଲା ଯଥା–ସୁନ୍ଦରଗଡ଼, ଗଞ୍ଜାମ, କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାକୁ ପରିସରଭୁକ୍ତ କରାଯାଇଛି । ପୁଣି ଏବେ ମୟୂରଭଞ୍ଜ ଜିଲ୍ଲାରେ ସାକ୍ଷରତା ଅଭିଯାନ ଆରମ୍ଭ କରାଯାଉଛି । ଏହି ଜିଲ୍ଲାର ସାକ୍ଷରତା ହାର ଶତକଡ଼ା ୩୧ ଭାଗ ଥିଲାବେଳେ ମହିଳାମାନଙ୍କର ସାକ୍ଷରତା ହାର ୧୯ ଭାଗ ମାତ୍ର । ଯେଉଁଠାରେ ଏତେ ଅଳ୍ପ ସଂଖ୍ୟକ ଲୋକ ସାକ୍ଷର, ସେମାନଙ୍କ ପାଇଁ ଯେତେ ପ୍ରକାର ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କଲେ ମଧ୍ଯ ତାହା ଫଳପ୍ରଦ ହେବା ଦିଗରେ କଳ୍ପନା କରିବା ବାହୁଲ୍ୟ ମାତ୍ର । ସେଥିପାଇଁ ମଣିଷ ଦାରିଦ୍ର୍ୟର କଶାଘାତରୁ କିପରି ମୁକ୍ତି ପାଇପାରିବ, ସେ ଦିଗରେ ସଚେତନତା ସୃଷ୍ଟି କରାଯିବା ଦରକାର । ତାହାହେଲେ ବାସ୍ତବ ଶିକ୍ଷା ସଫଳତା ଲାଭ କରିପାରିବ । ସେମାନଙ୍କୁ ସଚେତନ ନକରି କେବଳ ସମ୍ବଳ ଯୋଗାଇଲେ ମଣିଷ ତାହାର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ ନାହିଁ । ସେଥିପାଇଁ ବାସ୍ତବ ଶିକ୍ଷାର ଅନ୍ୟ ନାମ ସଚେତନତା ବୋଲି କୁହାଯାଇଛି । ଶିକ୍ଷା ହିଁ ମାନବର ମୌଳିକ ଉପାଦାନ । ଏକ ବୃକ୍ଷ ପାଇଁ ସାର ଯେପରି ମୌଳିକ ଉପାଦାନ ହୋଇଥାଏ, ସେହିପରି ମଣିଷ ପାଇଁ ଶିକ୍ଷାର ଆବଶ୍ୟକତା ଅପରିହାର୍ଯ୍ୟ । ଏହା ମଣିଷର ବୈଜ୍ଞାନିକ, ଶାରୀରିକ, ଆଧ୍ୟାତ୍ମିକ ଚିନ୍ତାଧାରା ଅଭିବୃଦ୍ଧିରେ ବ୍ୟବହାରିକ ଜ୍ଞାନକୁ ସୁଦୃଢ଼ କରି ଆଣି ଦିଏ ନୂତନ କଳା କୁଶଳତା ।

ଏହି ପରିପ୍ରେକ୍ଷୀରେ ସମ୍ମୁଖରେ ହିମାଳୟ ସଦୃଶ ଛିଡ଼ା ହୋଇଥିବା ନିରକ୍ଷରତାର ଏହି ପର୍ବତକୁ ଟାଳିବା ପାଇଁ ସମସ୍ତଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି । ଏତେ ବଡ଼ ସମସ୍ୟାର କିପରି ଦୂର କରାଯାଇ ପାରିବ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରର ପ୍ରବନ୍ଧମାନ ପ୍ରଚଳନ କରାଯାଇଛି । ସମସ୍ତଙ୍କୁ ଉଚ୍ଚଶିକ୍ଷାର ସୁଯୋଗ ଦେବା କଷ୍ଟସାଧ୍ୟ ବ୍ୟାପାର ହୋଇଥିବାରୁ ସାଧାରଣ ଭାବରେ ଲିଖନ, ପଠନ ଓ ଗଣିତ ଜ୍ଞାନ ଶିକ୍ଷା ପ୍ରଦାନ କରିବାର ପଦକ୍ଷେପମାନ ନିଆଯାଉଛି । ଏହ ଜାତୀୟ କର୍ତ୍ତବ୍ୟ ହିସାବରେ ବିବେଚନା କରିବା ସଙ୍ଗେ ଏହ ପ୍ରକଳ୍ପକୁ ସଫଳ ରୂପାୟନ ଦେବା ପାଇଁ ଜନସହଯୋଗ ଏକାନ୍ତ ଆବଶ୍ୟକ ।

ସାକ୍ଷରତା ଅଭିଯାନରେ ଗଣ ମାଧ୍ୟମର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଗଣ ମାଧ୍ୟମକୁ ଅଙ୍ଗୀକାର କରିବାକୁ ହେଲେ ଲୋକ ସଂସ୍କୃତିକୁ ଆଲିଙ୍ଗନ କରିବାକୁ ପଡ଼ିଥାଏ । ଏହାଦ୍ୱାରା ଜନଶିକ୍ଷା ପ୍ରୟୋଜନ ପ୍ରତି ଆଗ୍ରହ ସୃଷ୍ଟି ହୁଏ ଓ ନିରକ୍ଷର ଜନଗଣ ନିଜକୁ ସାମିଲ କରି ସଫଳତା ଦିଗରେ ସକ୍ଷମ ହୁଏ । ସେମାନେ ଯେଉଁ ଗଣ ମାଧ୍ୟମଗୁଡ଼ିକୁ ଗ୍ରହଣ କରନ୍ତି ସେଗୁଡ଼ିକ ହେଲା ଲୋକଗୀତ ଓ ଲୋକନୃତ୍ୟ । ଯଥା–ପାଲା ଗାଆଣ, ଦାସକାଠିଆ, ଢେଙ୍କାନାଚ, ଛଉନୃତ୍ୟ, ଘୁମୁରା, ଡାଲଖାଇ ଇତ୍ୟାଦି । ଉତ୍ତର ଓଡ଼ିଶାର ଯେତେ ପ୍ରକାରର ଗଣ ମାଧ୍ୟମ ରହିଛି ସେଥିମଧ୍ୟରୁ ମୟୂରଭଞ୍ଜର ଛଉନୃତ୍ୟ ଏକ ଶକ୍ତିଶାଳୀ ଲୋକପ୍ରିୟ ଗଣ ମାଧ୍ୟମ କହିଲେ ଅତ୍ୟୁକ୍ତି ହେବନାହିଁ । ଚୈତ୍ର ପର୍ବ ସମୟରେ ଲୋକେ ଅତି ଆଗ୍ରହର ସହକାରେ ଏହି ନୃତ୍ୟକୁ ଉପଭୋଗ କରିଥାଆନ୍ତି ।

ଆମର ନିରକ୍ଷର ତଥା ଦରିଦ୍ର ଲୋକମାନଙ୍କର ଆକର୍ଷଣକୁ ଲକ୍ଷ୍ୟ ରଖି ମୟୂରଭଞ୍ଜ ଛଉକୁ ମାଧ୍ୟମ ରୂପେ ବିବେଚନା କରାଯାଉଛି । ଏହାର ମୁଖ୍ୟ ଉଦ୍ଦେଶ୍ୟ ପ୍ରତ୍ୟକ୍ଷରେ ଛଉନୃତ୍ୟ ଦେଖିବା ସଙ୍ଗେ ସଙ୍ଗେ ପରୋକ୍ଷରେ ଶିକ୍ଷା ପ୍ରତି ମନୋନିବେଶ କରିବା । ଏଥି ସଙ୍ଗେ ଗତ ତା ୧୨/୪/୧୯୯୨ ରିଖ ମୟୂରଭଞ୍ଜର ଚୈତ୍ର ପର୍ବ ସମୟରେ ଅନୁଷ୍ଠିତ ହେଉଥିବା ମଫସଲ ଓ ରାଜ ଶାସନ କାଳର ଛଉନୃତ୍ୟ ଉତ୍ସବ ପାଳନ କାଳରେ ଏକ ସ୍ଥାନୀୟ ଲୋକ ମାଧ୍ୟମ ଛଉ ବିନିଯୋଗ କର୍ମଶାଳା ଆୟୋଜିତ ହୋଇଥିଲା । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଜିଲ୍ଲା ଜନଶିକ୍ଷା ସଂସ୍ଥାର ସହାୟତାରେ ଓଡ଼ିଶା ରାଜ୍ୟ ସ୍ୱେଚ୍ଛାସେବୀ ଓ ସମାଜସେବୀ ସଂଘ ମହାରାଜା କୃଷ୍ଣଚନ୍ଦ୍ର ଉଚ୍ଚ ବିଦ୍ୟାଳୟରେ ଏକ ଆଲୋଚନା ସଭା ଓ କର୍ମଶାଳା ପରିଚାଳନା କରିଥିଲେ । ଜିଲ୍ଲା ଜନଶିକ୍ଷା ଅଧିକାରୀ ଶ୍ରୀ ବିଜୟ କୁମାର ଦାସଙ୍କ ପରାମର୍ଶକ୍ରମେ ରାଜ୍ୟ ତଥା ଆଞ୍ଚଳିକ ସ୍ତରର ଖ୍ୟାତନାମା ଶିକ୍ଷାବିତ୍, ଛଉବିତ୍, କଳାକାର, ସାହିତ୍ୟିକ, ମାଧ୍ୟମ ବିଶେଷଜ୍ଞ, ଜନଶିକ୍ଷା ବିଶେଷଜ୍ଞ, ସମାଜସେବୀ ପ୍ରମୁଖ ପ୍ରାୟ ପଚାଶ ଜଣଙ୍କୁ ସେମାନଙ୍କର ମନ୍ତବ୍ୟ ପ୍ରଦାନ ପାଇଁ ଅନ୍ତର୍ଭୁକ୍ତ କରାଯାଇଥିଲା । କର୍ମଶାଳା ଓ ଆଲୋଚନାଚକ୍ରର ନିର୍ଦ୍ଦେଶକ ଥିଲେ ଏହି ଲେଖକ । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ଉପନିର୍ଦ୍ଦେଶକ ଡ. ହେମନ୍ତ କୁମାର ଦାସ ପ୍ରମୁଖ

ଷା ଭାବରେ ଯୋଗଦେଇ ସମସ୍ତ ନିରକ୍ଷରଙ୍କଠାରେ ଜନଶିକ୍ଷାର ପାଇଁ ପହଞ୍ଚାଇବାକୁ ହେଲେ ପାଲା, ଦାସକାଠିଆ, ଘୁମୁରା ପ୍ରଭୃତି ମାଧ୍ୟମ କରିବାକୁ ହେବ ଓ ସେମାନଙ୍କୁ ଆକର୍ଷଣ କରିବା ଭଳି ଶିକ୍ଷା ଜନୀୟ ବିଷୟବସ୍ତୁ ରଖିବାକୁ ହେବ ବୋଲି କହିଥିଲେ । ସେହି ପରିପ୍ରେକ୍ଷୀରେ ମୟୂରଭଞ୍ଜର ଛଉନୃତ୍ୟ ମାଧ୍ୟମକୁ କିପରି ବିନିଯୋଗ କରାଯାଇ ପାରିବ ସେ ଦିଗରେ ପରାମର୍ଶ ଦେଇଥିଲେ ।

ଅବସରରେ ଆୟୋଜିତ ଏକ କର୍ମଶାଳାର ସମସ୍ତ ଅଂଶଗ୍ରହଣକାରୀ ଛଉନୃତ୍ୟକୁ ଜନଶିକ୍ଷାର ମାଧ୍ୟମ ରୂପେ ପ୍ରୟୋଗ କରିବାକୁ ହେଲେ କେତେକ ନିୟମାବଳୀକୁ ପାଳନ କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ ।

ଏଥି ସକାଶେ ଏକ ଉପସମିତି ଗଠିତ ହେଲାପରେ ଜନଶିକ୍ଷା ବିଷୟ ସମ୍ବଳିତ ଏକ କାହାଣୀକୁ ଜିଲ୍ଲା ଜନଶିକ୍ଷା ବିଭାଗ ଅନୁମୋଦନ କରିବା ପରେ ନୃତ୍ୟ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଛୋଟ ଗଳ୍ପ ପ୍ରତି ଲୋକମାନଙ୍କର ଆକର୍ଷଣ ବେଶୀ ରହୁଥିବାରୁ ଏବଂ କ୍ଷେତ୍ରରେ ଏକାଧିକ ଜନଶିକ୍ଷା ସମ୍ବଳିତ ଛଉନୃତ୍ୟ ପ୍ରଦର୍ଶନ କରିବା ବ୍ୟୟବହୁଳ ଓ କଷ୍ଟସାଧ୍ୟ ବ୍ୟାପାର ହୋଇଥିବାରୁ ଏକ ପ୍ରାମାଣିକ କେଟିଏ ଭି. ଡି. ଓ. ମାଧ୍ୟମରେ ପ୍ରଦର୍ଶନ ପାଇଁ ପଦକ୍ଷେପ ନିଆଯାଇଥିଲା । ଛଉନୃତ୍ୟ ତାଳ ସ୍ୱର ଓ ନୃତ୍ୟ ଗଠନର ମୌଳିକ ଧାରାକୁ ପ୍ରୟୋଗ କରି ମଧୁବନସ୍ଥିତ ଭୈରବପୀଠ ଏବଂ ବୁଢ଼ାବଳଙ୍ଗ ଓ ଶିପଟ ନଦୀର ସଙ୍ଗମ ସ୍ଥଳରେ ଥିବା ପ୍ରାଚୀନ ଶୈବପୀଠ ବୁଢ଼ାରାଜେଳ ମହାଦେବ – ଧୁନୀମଠଠାରେ ଛଉ ଆଖଡ଼ା ଆରମ୍ଭ କରାଯାଇଥିଲା । ଏହି ଲେଖକର ନିର୍ଦ୍ଦେଶନାରେ ଦିଲ୍ଲୀର ଭାରତୀୟ କଳାକେନ୍ଦ୍ରରେ ଅବସ୍ଥାପିତ ଛଉ ନୃତ୍ୟଗୁରୁ ଶ୍ରୀ ଅଲେଖ ନିରଞ୍ଜନ ବିଶୋଇ ଓ ବାଦ୍ୟ ଶିଳ୍ପୀ ଶ୍ରୀ ଲୋକନାଥ ଧଡ଼ା "ସମ୍ପୂର୍ଣ୍ଣ ସାକ୍ଷରତା" ଶିରୋନାମାର ଛଉନୃତ୍ୟକୁ ପ୍ରସ୍ତୁତ କରିଥିଲେ । ସେମାନେ ଉତରସାହି ଓ ଦକ୍ଷିଣସାହି ଛଉନୃତ୍ୟର କେତେକ ଉତ୍ଥାନର ନୃତ୍ୟ ଭଙ୍ଗୀ, ସ୍ୱର ତାଳକୁ ପ୍ରୟୋଗ କରିଥିଲେ । ମୟୂରଭଞ୍ଜର ପାରମ୍ପରିକ ଛଉନୃତ୍ୟର ସମସ୍ତ ବିଭାବ ଅନୁକରଣରେ "ସମ୍ପୂର୍ଣ୍ଣ ସାକ୍ଷରତା" ନୃତ୍ୟଟି ଯେ ସୃଷ୍ଟି ହୋଇଛି ସେହି ସ୍ୱର ଉଚ୍ଚାରିତ ହେବା ହିଁ ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଚଳଚ୍ଚିତ୍ର ଗ୍ରହଣ ପାଇଁ ସୋମଶ୍ରୀ ବିଶ୍ୱାଳଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଶିକ୍ଷା ତଥା ଛଉନୃତ୍ୟ ଜଗତରେ ଏହି ଅଭିନବ ପଦକ୍ଷେପକୁ ମାନ୍ୟବର ରାଜ୍ୟ ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀଙ୍କ ଦୃଷ୍ଟିକୁ ଆସିବା ପରେ ସେ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସାକ୍ଷରତା ଅଭିଯାନରେ ଗଣମାଧ୍ୟମ ଛଉନୃତ୍ୟ କିପରି ନୂତନ ଦିଗ୍‌ଦର୍ଶନ ଦେବ ବୋଲି କହିଥିଲେ ।

ବଡ଼ ବଜାର, ବାରିପଦା,
ମୟୂରଭଞ୍ଜ-୭୫୭୦୦୧ ।



ବ୍ରହ୍ମପୁର ଟାଉନ୍ ହଲ୍‌ରେ ଅନୁଷ୍ଠିତ 'ସମ୍ବାଦପତ୍ରର ସ୍ୱାଧୀନତା' ଶୀର୍ଷକ ଆଲୋଚନା ଚକ୍ରରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର, ପ୍ରଫେସର ଚିନ୍ତାମଣି ମହାପାତ୍ର, ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ ଶ୍ରୀ ସତୀଶ ପାତ୍ର ପ୍ରମୁଖ ମଞ୍ଚାସୀନ ।

# କଙ୍ଗୋଦ ମଣ୍ଡଳର ସ୍ୱାଧୀନତା

● ଶ୍ରୀ ପ୍ରଶାନ୍ତ କୁମାର ରାୟ

ଚେଦି ବଂଶର ଅବସାନ ପରେ କଳିଙ୍ଗର ସ୍ୱାଧୀନତା ଇତିହାସ ଏକ ସ୍ୱତନ୍ତ୍ର ରୂପରେଖ ଧାରଣ କଲା । କଳିଙ୍ଗ ଭିନ୍ନ ଭିନ୍ନ ରାଜ୍ୟରେ ବିଭକ୍ତ ହୋଇଥିଲା । ଏହା ତିନିଭାଗ ହୋଇଥିବାରୁ ଏହାକୁ ତ୍ରି–କଳିଙ୍ଗ କୁହାଯାଏ । ଉତ୍ତର ଭାଗ ଉତ୍କଳ, ଦକ୍ଷିଣ ଭାଗ ଦକ୍ଷିଣ କଳିଙ୍ଗ ଏବଂ ମଧ୍ୟ ଭାଗ ମଧ୍ୟ କଳିଙ୍ଗ । ମୌର୍ଯ୍ୟ ଓ ଚେଦି ବଂଶର ଶାସନରେ ଏହି ତ୍ରି–କଳିଙ୍ଗ କୋଶଳ ରାଜ୍ୟକୁ ମିଶାଇ ଏକ ରାଜ୍ୟ ଥିଲା । କିନ୍ତୁ ପରବର୍ତ୍ତୀ କାଳରେ ସବୁ ପୃଥକ ପୃଥକ ଦେଶ ହୋଇଗଲା । ସେମାନଙ୍କ ମଧ୍ୟରୁ ମଧ୍ୟ କଳିଙ୍ଗ କଙ୍ଗୋଦ ରାଜ୍ୟରେ ପରିଣତ ହେଲା । କଙ୍ଗୋଦ ରାଜ୍ୟର ରାଜଧାନୀ ସାଲିମା ନଦୀ କୂଳରେ ଅବସ୍ଥିତ ଥିବାର ଜଣାଯାଏ । ସାଲିମା ବୋଧହୁଏ ବର୍ତ୍ତମାନର "ସାଲିଆ" ନଦୀ ଏବଂ ଏହାର କୂଳରେ ଅବସ୍ଥିତ ଥିବାର ଜଣାଯାଏ । ବାଣପୁର କଙ୍ଗୋଦର ରାଜଧାନୀ ଥିଲା ।

ଗୁପ୍ତ ସାମ୍ରାଜ୍ୟର ପତନ ପରେ ହର୍ଷବର୍ଦ୍ଧନଙ୍କ ସିଂହାସନ ଆରୋହଣ ପର୍ଯ୍ୟନ୍ତ ଭାରତର ରାଜନୈତିକ ଇତିହାସରେ ବିରାଟ ପରିବର୍ତ୍ତନ ଘଟିଥିଲା । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ପ୍ରଥମ ଭାଗରେ ଭାରତର ଇତିହାସ ତିନୋଟି ବିଶିଷ୍ଟ ବ୍ୟକ୍ତିଙ୍କ କାର୍ଯ୍ୟ କଳାପର ସମନ୍ୱୟରେ ପରିବର୍ଦ୍ଧିତ । ସେମାନେ ହେଉଛନ୍ତି ଉତ୍ତରରେ କନୌଜର ରାଜା ହର୍ଷବର୍ଦ୍ଧନ । ଦକ୍ଷିଣ ଓ ପଶ୍ଚିମରେ ଚାଲୁକ୍ୟର ରାଜା ଦ୍ୱିତୀୟ ପୁଲକେଶୀନ ଓ ପୂର୍ବରେ ଶଶାଙ୍କ ।

ସେମାନଙ୍କର ମଧ୍ୟରେ ଯେଉଁ କ୍ରମାଗତ ଦ୍ୱନ୍ଦ୍ୱ ଯୁଦ୍ଧର ସୂତ୍ରପାତ ହେଲା ସେଥିରେ ସମସ୍ତଙ୍କର ଦୃଷ୍ଟି କଙ୍ଗୋଦ ଉପରେ ପଡ଼ିଲା । ତସାପଟାରୁ ଜଣାପଡ଼େ ଯେ ଶଶାଙ୍କ କଙ୍ଗୋଦ ଉପରେ ରାଜନୈତିକ ପ୍ରଭାବ ବିସ୍ତାର କରିବା ପାଇଁ ଦୃଷ୍ଟି ରଖିଥିଲେ । ହୁଏନ୍‌ସାଂଙ୍କ ବୃତ୍ତାନ୍ତରୁ ଜଣାପଡ଼େ ଯେ ହର୍ଷବର୍ଦ୍ଧନଙ୍କର ଶଶାଙ୍କ ସହିତ ଶତ୍ରୁତା ଦୃଷ୍ଟିରୁ ସେ କଙ୍ଗୋଦରେ ପ୍ରବେଶ କରିଥିଲେ ।

ଖାରବେଳଙ୍କ ପରେ ଓଡ଼ିଶା ଇତିହାସରେ ଅନ୍ଧକାରମୟ ଯୁଗ ଆରମ୍ଭ ହେଲା । ଗୁପ୍ତବଂଶର ଶ୍ରେଷ୍ଠ ସମ୍ରାଟ ସମୁଦ୍ରଗୁପ୍ତ ଓଡ଼ିଶାର ଦକ୍ଷିଣାଞ୍ଚଳ ଜୟ କରିଥିଲେ ସୁଦ୍ଧା କଙ୍ଗୋଦ ମଣ୍ଡଳ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନଥିଲା । ବିଗ୍ରହବଂଶ ସାମନ୍ତ ରାଜା ରୂପେ ରାଜତ୍ୱ କରୁଥିଲେ । ସେମାନଙ୍କ ପରେ ଶୈଳୋଭଙ୍କ କଙ୍ଗୋଦ ମଣ୍ଡଳରେ ରାଜତ୍ୱ କଲେ । ଆଇହୋଲ ଅଭିଲେଖରୁ ଜଣାପଡ଼େ ଯେ ଚାଲୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀନ କଙ୍ଗୋଦ ଜୟ କରିଥିଲେ । ହର୍ଷବର୍ଦ୍ଧନ କଙ୍ଗୋଦ ଆକ୍ରମଣ କରିବାର ଦୁଇଟି କାରଣ ଥାଇପାରେ । ପ୍ରଥମତଃ ଶଶାଙ୍କ ସହିତ କଙ୍ଗୋଦ ମଣ୍ଡଳର ରାଜବଂଶ ଶୈଳୋଦ୍‌ଭବମାନଙ୍କର ପ୍ରତିଷ୍ଠିତ ହୋଇଥିବା ବନ୍ଧୁତା । ଦ୍ୱିତୀୟତଃ ଚାଲୁକ୍ୟ ବଂଶର ରାଜା ଦ୍ୱିତୀୟ ପୁଲକେଶୀନଙ୍କ ସହିତ ବିବାଦ । ବିଭିନ୍ନ ଗବେଷକ ବିଭିନ୍ନ ମତ ପ୍ରକାଶ କରିଛନ୍ତି । ଆଇହୋଲ ଅଭିଲେଖରେ ଉଲ୍ଲେଖ ଅଛି । 'ଅଭବୁତ୍ତ ପ୍ରତିଚ୍ଛୋଡ଼ି ଲିଙ୍ଗୀ ଯଦନୀକେନ ସକଳା କଳିଙ୍ଗାଃ' ।

ହର୍ଷବର୍ଦ୍ଧନଙ୍କର ଆଧିପତ୍ୟ କଙ୍ଗୋଦ ଉପରେ ବେଶୀଦିନ ଟିକି ନଥିଲା । ତାଙ୍କର ଶେଷ କଙ୍ଗୋଦ ଅଭିଯାନ ଖ୍ରୀଷ୍ଟାବ୍ଦ ୬୩୪ରୁ ୬୪୭ ମଧ୍ୟରେ ହୋଇଥିଲା । ତାଙ୍କର ଜୀବଦ୍ଦଶା ମଧ୍ୟରେ କଙ୍ଗୋଦ ଅଭିଯାନ ସମ୍ପୂର୍ଣ୍ଣ କରିପାରି ନଥିଲେ । ତାହା ସେ ତାଙ୍କ ବନ୍ଧୁ ଓ ଆସାମର ରାଜା ଭାସ୍କର ବର୍ମନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ହୋଇଥିଲା । ଏକାମ୍ର ପୁରାଣରୁ ଜଣାପଡ଼େ, ଭୁବନେଶ୍ୱରରେ ପ୍ରାକ୍ ଜ୍ୟୋତିଷପୁରୀର ଓ ବୀନ୍ଧ୍ୟାଞ୍ଚଳର ରାଜାଙ୍କ ମଧ୍ୟରେ ସଂଗ୍ରାମ ଚାଲିଥିଲା । ସୁତରାଂ ଏଥିରୁ ଜଣାପଡ଼େ ଯେ, କଙ୍ଗୋଦରେ ଭାସ୍କର ବର୍ମନ ଓ ଦ୍ୱିତୀୟ ପୁଲକେଶୀନ ମଧ୍ୟରେ ଯୁଦ୍ଧ ହୋଇଥିଲା ।

ହୁଏନ୍‌ସାଂଙ୍କ ବିବରଣୀରୁ ଜଣାପଡ଼େ ଯେ କଙ୍ଗୋଦ ଏକ ସାମରିକ ଶକ୍ତିଶାଳୀ ଦେଶଥିଲା । ପଡ଼ୋଶୀ ରାଜ୍ୟମାନଙ୍କର ଶତ୍ରୁତା ଓ କ୍ରମାଗତ ଆକ୍ରମଣର ପ୍ରତିରୋଧ ହେତୁ କଙ୍ଗୋଦ ତା'ର ସାମରିକ ଶକ୍ତି ସୁଦୃଢ଼ କରିଥିଲା ।

ଶୈଳୋଦ୍ଭବ ରାଜାମାନଙ୍କ ମଧ୍ୟରେ ମାଧବରାଜ ଖୁବ୍ ପରାକ୍ରମଶାଳୀ ଥିଲେ । ଖୋର୍ଦ୍ଧା ତସାପଟାରୁ ଜଣାପଡ଼େ ଯେ ନିଜକୁ ମହାରାଜଧିରାଜ ଏବଂ ସକଳ କଳିଙ୍ଗ ଅଧିପତି ଉପାଧିରେ ସେ ଭୂଷିତ କରିଥିଲେ । ସୁତରାଂ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ମଧ୍ୟ ଭାଗରେ ଶୈଳୋଦ୍ଭବମାନେ ବାହ୍ୟ ଶତ୍ରୁର ସଂଗ୍ରାମକ୍ଷେତ୍ର ହୋଇଥିବା କଙ୍ଗୋଦର ସ୍ୱାଧୀନତାକୁ ସୁଦୃଢ଼ କରି କାଳକ୍ରମେ ଶକ୍ତିଶାଳୀ ହୋଇଥିଲା । ହୁଏନ୍‌ସାଂଙ୍କ ବିବରଣୀରୁ ଜଣାପଡ଼େ ଯେ, ଶୈଳୋଦ୍ଭବଙ୍କର ସୁଦୃଢ଼ ଦୁର୍ଗ ଥିଲା ଏବଂ ଶକ୍ତିଶାଳୀ ସୈନ୍ୟବାହିନୀ ଥିଲା । ଦ୍ୱିତୀୟ ମାଧବରାଜ ତାଙ୍କର ଉତ୍ତରାଧିକାରୀ ପଡ଼ୋଶୀ ରାଜ୍ୟ ଜୟ କରି ଅଶ୍ୱମେଧ ଓ ରାଜସୂୟ ଯଜ୍ଞ କରିଥିଲେ । ହୁଏନ୍‌ସାଂ କଙ୍ଗୋଦବାସୀଙ୍କୁ ଅତି ସାହସୀ ଓ ତେଜସ୍ୱୀ ଭାବେ ବର୍ଣ୍ଣନା କରିଛନ୍ତି । ସେମାନଙ୍କ ଶରୀର କୃଷ୍ଣବର୍ଣ୍ଣ, ଚରିତ୍ର ଭଦ୍ର ଓ

...ଥିଲା । ବାଣିଜ୍ୟ ଅତି ଉନ୍ନତ ଥିଲା । କଉଡ଼ି ରାଜ୍ୟକୁ [illegible] ଯାଉଥିଲା । ଗମନାଗମନ ନିମନ୍ତେ ହସ୍ତୀ ଏକ ସ୍ୱୀକୃତ ମାଧ୍ୟମ ଥିଲା ।

ଖୋର୍ଦ୍ଧା ଏବଂ ପାରିକୁଦରୁ ମିଳିଥିବା ତମ୍ବାପଟାରୁ ଜଣାପଡ଼େ ଯେ ...ଶ୍ୱର ଶୈଳୋଦ୍ଭବମାନଙ୍କ ଅନ୍ତର୍ଭୁକ୍ତ ଥିଲା । ଭୁବନେଶ୍ୱରର ... ମନ୍ଦିର ତଥା ଶତ୍ରୁଘ୍ନେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ପାଶୁପତେଶ୍ୱର ପ୍ରଭୃତି ଶୈବ ମନ୍ଦିର ଶୈଳୋଦ୍ଭବମାନଙ୍କ ଦ୍ୱାରା ନିର୍ମାଣ ହୋଇଥିଲା । ସେମାନଙ୍କ ରାଜତ୍ୱରେ ଶୈବ ଧର୍ମର ପ୍ରସାର ସଙ୍ଗେ ସଙ୍ଗେ ପାଶୁପାତ ସମ୍ପ୍ରଦାୟର ପ୍ରଭାବ ଦେଶରେ ...ଥିଲା ।

ଶୈଳୋଦ୍ଭବମାନଙ୍କ ପୃଷ୍ଠପୋଷକତା ହେତୁ ଓ କଙ୍ଗୋଦବାସୀଙ୍କ ସ୍ୱାଧୀନ ମନୋଭାବ ହେତୁ ଶିବାଳୟଗୁଡ଼ିକ କାରୁକାର୍ଯ୍ୟରେ ପୂରି ଉଠିଥିଲା । କଙ୍ଗୋଦ ଧର୍ମାଗତ ବାହ୍ୟଶକ୍ତିର ପରସ୍ପର ମଧ୍ୟରେ ସଂଗ୍ରାମ ସ୍ଥଳ ହୋଇଥିଲେ ମଧ୍ୟ କଙ୍ଗୋଦବାସୀ ମାତୃଭୂମିର ସ୍ୱାଧୀନତା ପାଇଁ ଯଥୋଚିତ ଜବାବ ଦେବାକୁ କୁଣ୍ଠାବୋଧ କରି ନଥିଲେ ।

---

ଅଧ୍ୟକ୍ଷ, ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ,
ଭୁବନେଶ୍ୱର ।



ସ୍ୱାଧୀନତା ଦିବସ ପାଳନ ଅବସରରେ କଲିକତାର ଲେନିନ୍ ସରଣୀଠାରେ ଉତ୍କଳମଣି ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ ଓ ଜାତୀୟ ପତାକା ଉତ୍ତୋଳନ । ମଧ୍ୟ ଭାଗରେ ପଶ୍ଚିମବଙ୍ଗ ଉତ୍କଳ ସମାଜ ସଭାପତି ପ୍ରଫେସର କୃଷ୍ଣଚନ୍ଦ୍ର ଭୂୟାଁ ଓ ସମ୍ମାନୀୟ ଅତିଥି ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଶ୍ରୀ ବଳରାମ ପୁଷ୍ଟି ।

# ॥ ବର୍ଷା ରାସ ॥

● ପ୍ରହରାଜ ସତ୍ୟନାରାୟଣ ନନ୍ଦ

ମଣବଡ଼ି ହେଲେ ପାଣି ଗୋହିରୀରେ ଲହଡ଼ି ଭାଙ୍ଗିଲେ
ବଛା ହସାଇବ ମଝିରାତିରେ.......ମାଆର
ନିଦ ଭାଙ୍ଗିଯିବା ପରେ ଆପୁଡ଼ାଇ ଶିଶୁର କପାଳ
ତୁମେ ଧୀରେ ଦ୍ୱାର ଖୋଲି ଆସିବ ଦାଣ୍ଡକୁ,
ବଂଶୀ କେତେ ଦୂରେ ଶୁଭେ, କ୍ଷୀଣ ଧ୍ୱନି କାଠ କବାଟରେ
କାନ ଡେରି ଶୁଣି ହୁଏ ଆଉ ଜମା ନିଦ ହୁଏ ନାହିଁ ॥

ଶୁଆ ପୋଷିଥିଲେ ସୁଦେ ଚୁଲୁଚୁଲୁ ତୁମ ଆଖି ଆଡେ
ମେଘ ମାଳ ମାଳ ଭାସେ ଅଗଣାରୁ ବେତକୁଞ୍ଜ ଯାଏ ;
ରାତିରେ ଓହ୍ଲାଇ ଆସେ ନିର୍ଭୟରେ ତା' ପ୍ରେମିକ ମନ
ତୁମ ଘର ମଥାନକୁ ; ହାତ ଟେକି ନ ଉଠିବା ଯାଏ,
କେମିତି ବୁଝିବ ନିଦ ଭାଙ୍ଗିଗଲେ ତୁମ ଚେତନାକୁ
ବେଢ଼ିଯା'ନ୍ତି ସାଙ୍ଗସାଥୀ ବାନ୍ଧବୀ କିଶୋରୀ,
ନାରୀ ଜନ୍ମ ନେଲ ଯଦି କାହିଁକି ବୁଝିବ ନାହିଁ ପ୍ରେମିକ ଶୁଙ୍ଗୁରୀ ॥

ତୁମ ନିଦ ଭାଙ୍ଗିଗଲେ କି ବିପଦ ପାଖ ଗଛ ଡାଳୁ
ଓହ୍ଲାଇ ଆସନ୍ତି ପଞ୍ଝେ ମୟୂର ମୟୂରୀ,
କାଆ ଓ କୋଟଣି ପାରା ଭଦାଳିଆ ଟିଟି ହଂସରାଳି
ତୁମ ପଛେ ପଛେ ଘୁଲିଥାନ୍ତି ଧାଡ଼ି ଧାଡ଼ି ॥

ଯୋରରୁ ପ୍ରାନ୍ତର ଦିଶେ ବୃତ୍ତାକାର କଦମ୍ବ ଦୁଇଟି
ଶାଖା ଛବି ରହିଥାନ୍ତି ଦିଗ୍ରୁ ଦିଗ୍ରୁ ସ୍ଥୂର ଅନୁସରି
ଆସନ୍ତି ପଞ୍ଝାଏ ନାରୀ ଶୁଦ୍ଧୁଆନ୍ତି କେବେ ଫେରି ଫେରି
ପଛରୁ ଆସୁଚି କିଏ ଝାପ୍‌ସା ଜହ୍ନରାତି
ହମଗ ସୁନ୍ଦର ଦିଶେ ଆଗକୁ, ଆଗକୁ ;
ତା'ଠାରୁ ସୁନ୍ଦର ଅଗେ ଦେଖାଦେଲେ ଚିହ୍ନା ସାଙ୍ଗସାଥୀ ॥

ବଂଶୀ ଡାକେ ରହିରହି ବିରହ ଯେମିତି ଛନକା ମନରେ ଆଣେ
କିଛି ଶଙ୍କା ମିଳନ ଇଚ୍ଛାକୁ ଜଗିରହେ ଅବଚେତନରେ,
ମେଘ ଘେରି ଦିଏ ବୃତ୍ତ କଦମ୍ବ କୁଞ୍ଜରେ,
ମାଳ ମାଳ ଲଟା ତଳୁ ଶିଶୁ ପରି ଚୁଲୁଚୁଲୁ ଆଖି
ଅପଲକେ ଦେଖୁଥାଏ, କାହିଁକି ବା ଆସିଚ ଏକାକୀ ॥

ସ୍ତୂପ ପରେ ସ୍ତୂପ ପରି ଦିଗ ଦିଗ ଘେରି
ଛିଟ ଶାଢ଼ୀ ବାନ୍ଧି ରଖେ ବର୍ଷାବିନ୍ଦୁ ଚଞ୍ଚରେ, ରାଗରେ ;
ମେଘ ଲୋଟି ପଡ଼େ ମାଟିକୁ ଓହଳିଥିବା ନୀଳ ପଦ୍ମଫୁଲ
କେଶର, କେଶର ବର୍ଷା ଟାଣେ ରାଗ ଲୟ ଅଞ୍ଚଳରେ ॥

: ଚଞ୍ଚଳ ବାହୁକୁ ଛନ୍ଦି ବାହୁରେ ଓ ପାଦକୁ ପାଦରେ
ବର୍ଷାର କଦମ୍ବ ପରି ଦିଁଜଣ ବା କାହା ଅପେକ୍ଷାରେ :
ବିଜୁଳି ଚମକି ଗଲେ ହଜଦିଁଆ ଲୁଗାକାନି ଝଲେ
ଝୀନ କୃଷ୍ଣ ଶାଢ଼ୀ ପ୍ରାନ୍ତ, କୋମଳ ସଙ୍ଗୀତ,
ଆପେ ଆପେ ଓଠ ଛୁଁଏଁ ଅନେକ ଅତୀତ,
ସ୍ମୃତି ଗର୍ଭୁ ସୁଖ ଖୋଜେ ତୁମ ଚଲାପଥ
ଚିହ୍ନ ରଖିଦିଏ ଛାତି ତଳେ.....................
ତୁମେ କେବେ ଆସିଥିଲ ଠେକି ଭାଙ୍ଗି ଶିକାରୁ ଲୁଟିଲ
ଲହୁଣୀ ଓ ସରପୁଳି ପଦ୍ମଁଶ ମୁଠାରେ ॥

ଜହ୍ନରାତି କି ଚଞ୍ଚଳ ପ୍ରଗଲ୍ଭ ଖପରୁ ଖପକୁ
ଖଡ଼ାଣିରେ ଯୋଡୁଥାନ୍ତି ହଂସପାଦ, ମୟୂର–ମୟୂରୀ,
କି ଚିତ୍ରିତ ବନଭୂମି ଦ୍ୟୋତ୍ମାଧୂଆ ତୀକ୍ଷଣ ବର୍ଷାଧାର
କ୍ଷଣକେ କଦମ୍ବ ଆଡ଼େ ଫିଙ୍ଗିଦିଏ ଅଗଣିତ ଶର ॥

ଚକ୍ରାକାରେ ଶର ବୁଲେ, ଚକ୍ରାକାରେ ରାତି ଓ ପୃଥିବୀ,
ଚକ୍ରାକାରେ ବର୍ଷାଧାର, ଆକାଂକ୍ଷା ମନର:
ବୃତ୍ତରୁ କେନ୍ଦ୍ରକୁ ଖୋଜେ, କେଉଁ ପ୍ରତ୍ୟନ୍ତର
ଗ୍ରୀବପାଦ ଭୂମି ହୁଏ ହୃତ୍‌ପିଣ୍ଡ ଆମର ॥

ବର୍ଷା ହସାଉଡ଼ି ଛାଡ଼େ ନୃତ୍ୟ ତାଳେ ଉନ୍ମୁକ୍ତ ମୟୂରୀ
କଟିବସ୍ତ୍ର ସାଥେ ବାନ୍ଧେ ନଶ୍ୱରଶୀଳ ସତ୍ତା ସମସ୍ତର,
ଫୁଲ ପାଖୁଡ଼ାରେ ତୁମ ପ୍ରତିବିମ୍ବ ଆପେ ଆପେ ନାଚେ
ବଂଶୀଧ୍ୱନି। ଆଉ କ'ଣ ତୁନି ହୁଏ ଛୁଇଁଦେଲେ ଥରେ ମର୍ମସ୍ଥଳ ॥

ଆଉ ନିଦ ହୁଏ ନାହିଁ ରାତି ରାତି ଜୋସ୍ନାର ଝଲକ,
ଶିଶୁର ତାଲୁକା ତଳେ ଟଳମଳ ପାରଦ ବିନ୍ଦୁରେ
ପ୍ରତିଛାୟା ମିଳନର ତୁମେ ଦେଖୁଥାଅ
:ଆଖି ବନ୍ଦ କଲା ବେଳେ ପାହାନ୍ତା ପହରେ ॥

ସହକାରୀ ସମ୍ପାଦକ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା,
ଭୁବନେଶ୍ୱର।



ବ୍ରହ୍ମପୁରଠାରେ ଅନୁଷ୍ଠିତ ଦେବ ପ୍ରସାଦ କଳାତୀର୍ଥର ବାର୍ଷିକ ଉତ୍ସବରେ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର, ବିଧାୟକ ଶ୍ରୀ ପର୍ଶୁରାମ ପଣ୍ଡା, ଉତ୍କଳ ପ୍ରସଙ୍ଗ ମୁଖ୍ୟ ସମ୍ପାଦକ ଶ୍ରୀ ଗୌରୀଶ୍ୱର ନନ୍ଦ
ଶ୍ରୀ ସତୀଶ ପାଢ଼ୀ ଓ ସଙ୍ଗୀତ ନାଟକ ଏକାଡେମୀ ସମ୍ପାଦକ ଶ୍ରୀ ଗୌରୀଶ୍ୱର ନନ୍ଦ ପ୍ରମୁଖ ମଞ୍ଚାସୀନ (୨୫/୭)।

# ॥ ଯାଯାବର ॥

● ଶ୍ରୀ ନୀଳମଣି ମିଶ୍ର

ପ୍ରୀତି ଆଷାଢ଼ର ମୌସୁମୀରେ
ଅଶ୍ରୁସିକ୍ତ ପବନର ଆଦ୍ର ଉର୍ମିରୀ,
ଆକୁଳ ଅଙ୍ଗନେ ମୋର
ଅବଳନ ପୁଷ୍ପର ମହକ,
ଛଳନାର ନିବିଡ଼ ତମସାରେ
ବନ୍ଦିନୀର ରୋମାଞ୍ଚ କୁହୁକ !

'ତାଜ'ର ମର୍ମର ବୁକୁରେ
କୋଟି ବାଦଶାହୀ ସ୍ୱପ୍ନର ପ୍ରତିବିମ୍ବ..........
ଦେଖି ଦେଖି ମୁଁ ଭୁଲିଛି ମୃତ୍ୟୁକୁ;
'ଧଉଳି'ର ଗିରିପଟେ ପ୍ରତିଧ୍ୱନୀ..........
"ବୁଦ୍ଧଂ ଶରଣଂ ଗଛାମି"..............
ଶୁଣି ଶୁଣି ମୁଁ ଖୋଜୁଛି ନିର୍ବାଣ !
ସତରେ, ଏମିତି ବଞ୍ଚିବାର ଯୁକ୍ତି
ବା ମରିବାର ବାହାନା ନିହାତି ଛଳନା !
ତଥାପି ଜୀବନର ବୟସ ମାପି ମୁଁ ଗ୍ଲାନିଛି ।
ଏମିତି ମାପୁ ମାପୁ
ଉଡ଼ି ଉଡ଼ି ଯାଇଛି
ସବୁ ଅନୁଭବର ଗନ୍ଧ ।
ଲିଭି ଲିଭି ଯାଇଛି..............
ସବୁ ସ୍ମୃତିର ରଙ୍ଗ,
ଲୁଚି ଲୁଚି ଯାଇଛି
ସବୁ ଅଶ୍ରୁର ରୂପ !
ମୁଁ ଯାଯାବର ବିଧ୍ୱସ୍ତ ପୃଥିବୀର !
ପ୍ରୀତି ଆଷାଢ଼ର ପ୍ରଥମ ମୌସୁମୀର
ରୋମନ୍ଥନ ପାଇଁ..............
କିଛି କୌତୁହଳ ରହିନି,
ବ୍ୟର୍ଥ ସ୍ୱପ୍ନର ଅନେକ ଯନ୍ତ୍ରଣାର
କିଛି ପ୍ରତିକ୍ରିୟା ନାହିଁ ।
ମନର କ୍ଲୀବତ୍ୱ ଭିତରେ
ଗୋଟିଏ ସଂଜ୍ଞାହୀନ ସ୍ନେହର ଅପମୃତ୍ୟୁ !

ଉପ-ଜିଲ୍ଲାପାଳ,
ଆଠଗଡ଼, କଟକ ।

# ଶିଶୁମାନଙ୍କ ତରଳ ଝାଡ଼ା : କାରଣ ଓ ନିରାକରଣ

● ଡା: କଲ୍ୟାଣୀ ଦାଶ

ବିକାଶଶୀଳ ଦେଶମାନଙ୍କରେ ଉପଯୁକ୍ତ ଖାଦ୍ୟ, ବିଶୁଦ୍ଧ ପାନୀୟଜଳ ଓ ସୁସ୍ଥ ପାରିପାର୍ଶ୍ୱିକ ଅବସ୍ଥାର ଅଭାବଯୋଗୁଁ ବହୁ ଶିଶୁ ଅକାଳରେ ମୃତ୍ୟୁମୁଖରେ ପଡୁଛନ୍ତି । ଆମ ଦେଶରେ ଶତକଡ଼ା ୩୩ ଭାଗ ଶିଶୁ କେବଳ ଝାଡ଼ାବାନ୍ତି ବା ତରଳ ଝାଡ଼ା (ଡାଇରିଆ) ରୋଗରେ ମରିଥାନ୍ତି । ମୁଖ୍ୟତଃ ଶରୀରରୁ ଜଳୀୟ ଅଂଶର ହ୍ରାସ ଏ ପ୍ରକାର ଶିଶୁ ମୃତ୍ୟୁ ପାଇଁ ଦାୟୀ । ବାରମ୍ବାର ତରଳଝାଡ଼ା ହେବାଦ୍ୱାରା ଖାଦ୍ୟାଭାବ ଘଟି ଶିଶୁ ଶରୀରର ଅଭିବୃଦ୍ଧି ଘଟିପାରେ ନାହିଁ । ଫଳରେ ଶିଶୁର ଶରୀରରେ Secretory Ig A ନାମକ ଏକ ପଦାର୍ଥ ଯଥେଷ୍ଟ ପରିମାଣରେ ପ୍ରସ୍ତୁତ ନ ହୋଇ ପାରି ପୁଷ୍ଟିହୀନତା ଦେଖାଦିଏ ଓ ବାରମ୍ବାର ତରଳଝାଡ଼ା ଲାଗି ରହିଲେ ଶିଶୁର ମୃତ୍ୟୁ ହୁଏ ।

ଡାଇରିଆ ବା ତରଳଝାଡ଼ା ଏବଂ ଝାଡ଼ାବାନ୍ତି ରୋଗ କେତେକ ଜୀବାଣୁ, ଭୂତାଣୁ ଓ ପ୍ରୋଟୋଜୋଆ ଯୋଗୁଁ ହୋଇଥାଏ । ଏଥିମଧ୍ୟରୁ କେତେକ ମୁଖ୍ୟ ଜୀବାଣୁ ହେଲା– ଇକୋଲାଇ, ସିଗେଲା, ସାଲ୍‌ମୋନେଲା, ଭିବ୍ରିଓ କଲେରି । ଭୂତାଣୁ ମଧ୍ୟରେ ରୋଟାଭାଇରସ ଓ ପ୍ରୋଟୋଜୋଆ ମଧ୍ୟରେ ଜିଆର୍ଡିଆ, ଇ:ଏଚ: ଡାଇରିଆର ମୁଖ୍ୟ କାରଣ । ଏହିସବୁ ଜୀବାଣୁ ବା ଭୂତାଣୁମାନେ ଏକାକୀ ବା ମିଳିତଭାବରେ ଶରୀରରେ ରୋଗ ସୃଷ୍ଟି କରନ୍ତି । କେତେକ କ୍ଷେତ୍ରରେ କୌଣସି କାରଣ ଜଣାପଡ଼େ ନାହିଁ । ଏହି ଜୀବାଣୁ, ଭୂତାଣୁ ଓ ପ୍ରୋଟୋଜୋଆଗୁଡ଼ିକ ଖାଦ୍ୟ, ପାନୀୟ ସଙ୍ଗେ ମିଶି ଶିଶୁର ଶରୀର ମଧ୍ୟକୁ ପ୍ରବେଶ କରନ୍ତି । ରୋଗୀର ମଳ ଶିଶୁର ଖାଦ୍ୟ ଓ ପାନୀୟ ସଂସ୍ପର୍ଶରେ ଆସିଲେ ତାହା ଶିଶୁ ଶରୀରରେ ରୋଗ ଜନ୍ମାଏ । ଶିଶୁର ଦୁଧ ବୋତଲ, ଗିନା, ଚାମଚ ସଫା ସୁତୁରା କ୍ରମେ ପରିଷ୍କାର ନ ହେଲେ ଓ ପିତାମାତା ଶିଶୁକୁ ଖୁଆଇବା ପୂର୍ବରୁ ଭଲଭାବେ ହାତ ନ ଧୋଇଲେ ଶିଶୁ ଡାଇରିଆ ରୋଗରେ ଆକ୍ରାନ୍ତ ହୁଏ ।

ଜୀବାଣୁ ବା ଭୂତାଣୁ ଶରୀର ମଧ୍ୟରେ ପ୍ରବେଶ କରି ପ୍ରଥମେ ଏକ ବିଷାକ୍ତ ପଦାର୍ଥ (Toxin) ପ୍ରସ୍ତୁତ କରନ୍ତି । ବେଳେ ବେଳେ ଜୀବାଣୁ ଅନ୍ତନଳୀକୁ ସଂକ୍ରମିତ କଲେ ରୋଗ ଜନ୍ମିଥାଏ । ଏହା ଫଳରେ ଶିଶୁର ବାରମ୍ବାର ତରଳଝାଡ଼ା ଓ ବେଳେବେଳେ ଝାଡ଼ା ସଙ୍ଗେ ବାନ୍ତି ମଧ୍ୟ ହୁଏ । କେତେକ କ୍ଷେତ୍ରରେ ପେଟକାମୁଡ଼ା ଓ ଜ୍ୱର ହୋଇଥାଏ । ଝାଡ଼ା ପାଣିପରି ତରଳ ହେବା ସଙ୍ଗେ ସଙ୍ଗେ ରକ୍ତ ଓ ନାଳ ପଡ଼ିଥାଏ । ଯେଉଁ ଶିଶୁମାନଙ୍କର କୋଷ୍ଠ କାଠିନ୍ୟ ଥାଏ, ଗୋଟିଏ ଦୁଇଟି ଲାଗ ଲାଗ ତରଳ ଝାଡ଼ା ମଧ୍ୟ ସେମାନଙ୍କ ଶରୀରରୁ ଜଳୀୟାଂଶର ହାନି ଘଟାଇଥାଏ । ଶିଶୁର କ୍ଷୁଧା କମିଯାଏ ଓ ବାଧ୍ୟକରି ଖୁଆଇଲେ ବାନ୍ତି ହୁଏ । ରୋଟାଭାଇରସ୍ ସଂକ୍ରମଣରେ ତରଳଝାଡ଼ା ସଙ୍ଗେ କାଶ ଓ ସର୍ଦ୍ଦି ଲାଗିରହିପାରେ । ଇକୋଲାଇ ଓ ସିଗେଲା ଯୋଗୁଁ ଯେଉଁ ଡାଇରିଆ ହୁଏ, ସେଥିରେ ଝାଡ଼ାରେ ନାଳ ଓ ରକ୍ତ ପଡ଼ିଥାଏ ।

## ଶରୀରରେ ଜଳୀୟ ଅଂଶର ଅଭାବ (Dehydration) :

ଅଧିକାଂଶ କ୍ଷେତ୍ରରେ ଦେଖାଯାଏ ଯେ ଡାଇରିଆ ହୋଇ ଶିଶୁ ଶରୀରରୁ ଜଳୀୟଅଂଶ ହାନି ହୁଏ । ଏହାକୁ Dehydration କୁହାଯାଏ । ଶରୀରରୁ ଜଳୀୟ ଅଂଶ ହ୍ରାସର ମୁଖ୍ୟ କାରଣଗୁଡ଼ିକ ହେଲା– (୧) ବହୁତ ଥର ବା ବହୁତ ପରିମାଣରେ ତରଳଝାଡ଼ା ହେବା (୨) ବହୁତ ସମୟଧରି ବା ବହୁତ ପରିମାଣରେ ବାନ୍ତି ହେବା ଏବଂ (୩) ଝାଡ଼ା କମାଇବା ପାଇଁ ରୋଗୀକୁ ଖାଦ୍ୟ ପାନୀୟ ନଦେବା ।

## ଡିହାଇଡେସନର ଲକ୍ଷଣ :

ହଠାତ୍ ରୋଗୀର ଓଜନ କମିଯିବା, ଚର୍ମ ଲୋସୁକୋସୁ ହୋଇଯିବା, ଶରୀରର ମାଂସପେଶୀ ନରମ ଲାଗିବା, ସମ୍ପୂର୍ଣ୍ଣ ଜ୍ଞାନ ନରହିବା, ଆଖି ପଶିଯିବା, ଆଖିରୁ ଲୁହ ଝରିବା କମିଯିବା, ମୁଣ୍ଡଉପର ଦୁବ୍‌ଦୁବି (ଫଣ୍ଟାନେଲି) ଦବିଯିବା, ଓଠ, ପାଟି, ଜିଭ ଶୁଖିଯିବା, ହୃତ୍‌ପିଣ୍ଡ ସ୍ପନ୍ଦନର ଗତି ବଢ଼ିଯିବା, ରକ୍ତଚାପ କମିଯିବା, ପରିସ୍ରା ପରିମାଣ କମିଯିବା ବା ସମ୍ପୂର୍ଣ୍ଣ ବନ୍ଦ ହୋଇଯିବା ଇତ୍ୟାଦି ଡିହାଇଡ୍ରେସନର ଲକ୍ଷଣ । ଏ ସବୁ ହେଲେ ଶିଶୁ ବେଳେ ବେଳେ କାନ୍ଦେ ଓ ବେଳେ ବେଳେ ହାତଗୋଡ଼ ନହଲାଇ ନିର୍ଜୀବ ହୋଇ ଶୋଇରହେ ।

## ପ୍ରାଥମିକ ଚିକିତ୍ସା :

ଶିଶୁର ଡାଇରିଆ ବା ତରଳଝାଡ଼ା ଏବଂ ବାନ୍ତି ହେଲେ ପିତାମାତା ଅତି ବ୍ୟସ୍ତ ହୋଇ ପଡ଼ନ୍ତି । ମାତ୍ର ପ୍ରଥମରୁ କୌଣସି ଔଷଧପତ୍ର ନଦେଇ କେବଳ ଶରୀରର ଜଳୀୟ ଅଂଶର ପରିମାଣ ଠିକ୍ ରଖିଲେ ଶିଶୁ ସୁସ୍ଥ ହୋଇ ପାରନ୍ତି । ଅଧିକାଂଶ କ୍ଷେତ୍ରରେ ପ୍ରାୟ ୮୫ ଶତାଂଶ ଶିଶୁ ସୁସ୍ଥ ହୋଇ ପାରନ୍ତି । ଅଧିକାଂଶ କ୍ଷେତ୍ରରେ ବିନା ଔଷଧରେ କେବଳ ଲୁଣ ଚିନି ସର୍ବତ, ପରିଡ଼ ପାଣି ଦେଲେ ଡାଇରିଆ ଭଲ ହୋଇଯାଏ । ମାତ୍ର ଏହି ରୋଗର ପରିଣାମ ଅନେକ ସମୟରେ ଭୟଙ୍କର ହେଉଥିବାରୁ ନିମ୍ନଲିଖିତ ଲକ୍ଷଣମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଦେଖାଦେଲେ ଶିଶୁକୁ ତୁରନ୍ତ ନିକଟସ୍ଥ

ଡାକ୍ତରଖାନାକୁ ସ୍ଥାନାନ୍ତରିତ କରିବା ଉଚିତ । (୧) ଝାଡ଼ାରେ ରକ୍ତ ଓ ନାଳ ଦେଖାଦେଲେ (୨) ଅଧିକ ଜ୍ୱର ହେଲେ (୩) ଅତ୍ୟଧିକ ଜଳୀୟାଂଶ ହାନି ଘଟିଲେ (severe dehydration).

ଶିଶୁକୁ ଯଥେଷ୍ଟ ପରିମାଣରେ ଜଳୀୟ ପଦାର୍ଥ, ବାର୍ଲି ଶାଗୁ ପଇଡ଼ ପାଣି ଇତ୍ୟାଦି ପିଇବାକୁ ଦେଲେ ଅଧିକାଂଶ କ୍ଷେତ୍ରରେ ସେମାନେ ସୁସ୍ଥ ହୁଅନ୍ତି । ଚିନି ଓ ଲୁଣ ମିଶା ପାଣି ଘରୋଇ ଚିକିତ୍ସା ମଧ୍ୟରେ ମୁଖ୍ୟ । ଏକ ଲିଟର ଫୁଟାପାଣି ଥଣ୍ଡାକରି ସେଥିରେ ଆଠଗ୍ରାମଚ ଚିନି ଓ ଏକ ଗ୍ରାମଚ ଲୁଣ ମିଶାଇ ତା'ର ଦ୍ରବଣକୁ ବାରମ୍ବାର ଶିଶୁକୁ ପିଇବାକୁ ଦେବା ଉଚିତ । ପ୍ରତିଥର ଝାଡ଼ାପରେ ଏହି ସରବତରୁ ଗିଲାସେ ଲେଖାଁ କିମ୍ବା ଅଳ୍ପ ଅଳ୍ପ ପରିମାଣରେ ପ୍ରତି ପାଞ୍ଚ ମିନିଟ୍ ଅନ୍ତରରେ ପିଇବାକୁ ଦେଲେ ଶରୀରରୁ ଜଳୀୟ ଅଂଶର ହାନି ଘଟେ ନାହିଁ । ଥରେ ପ୍ରସ୍ତୁତ କଲେ ଏହି ସରବତ ୨୪ ଘଣ୍ଟା ପର୍ଯ୍ୟନ୍ତ ରହିପାରେ । ଏହା ବ୍ୟତୀତ "ଇଲେକ୍ଟ୍ରାଲ" ଗୁଣ୍ଡ ଜଳରେ ମିଶାଇ ପିଇବାକୁ ଦିଆଯାଇପାରେ । ଏହାଦ୍ୱାରା ଶରୀରରୁ ଜଳ ସହ ଯେଉଁ ଅତ୍ୟାବଶ୍ୟକୀୟ Electroiytesର ହାନି ଘଟେ ତାହା ପୂରଣ କରାଯାଇପାରେ । ଅତ୍ୟଧିକ ବାନ୍ତି ଯୋଗୁଁ ବେଶି ଦୁର୍ବଳ ହୋଇ ଶିଶୁ ନିର୍ଜୀବ ପରି ରହୁଥିଲେ ତା'ର ଶରୀର ମଧ୍ୟକୁ ଶିରାବାଟେ ଗ୍ଲୁକୋଜ ସାଲାଇନ୍ ଦେବା ଏକାନ୍ତ ଜରୁରୀ ।

## ଚିକିତ୍ସାର ଅନ୍ୟ ଦିଗ :

ପ୍ରତ୍ୟେକ ଡ଼ାଇରିଆ ରୋଗୀର ଝାଡ଼ା ପରୀକ୍ଷାକରାଇ ଝାଡ଼ାର କାରଣ ଜାଣିବା ଅତି ଆବଶ୍ୟକ । ଏଥିପାଇଁ ଉପଯୁକ୍ତ ଯୋଗ୍ୟତା ସମ୍ପନ୍ନ ଚିକିତ୍ସକଙ୍କ ଦ୍ୱାରା ଝାଡ଼ା ପରୀକ୍ଷା କରିବା ଉଚିତ୍ । ତଦ୍ୱାରା ଜୀବାଣୁ ଓ ପ୍ରୋଟୋଜୋଆ ଜନିତ ହେଉଥିବା ଝାଡ଼ାର କାରଣ ଜଣାପଡ଼େ । ଇଲେକ୍ଟ୍ରନ୍ ମାଇକ୍ରୋସ୍କୋପରେ ଦେଖିଲେ ଓ ଏଲିଜା ପରୀକ୍ଷା କଲେ ଭୁତାଣୁଜନିତ ଡାଇରିଆର କାରଣ ଜଣାପଡ଼େ ।

## ପ୍ରତିବିଧାନ :

ବିଶ୍ୱସ୍ୱାସ୍ଥ୍ୟ ସଂଗଠନ ତରଳଝାଡ଼ାର ଚିକିତ୍ସା ପାଇଁ ଯେଉଁ ସବୁ ପରାମର୍ଶ ଦେଇଛନ୍ତି ସେଗୁଡ଼ିକ ହେଲା– (୧) ଶରୀରର ଜଳୀୟାଂଶ ହାନି ପାଇଁ ଉପଯୁକ୍ତ ତରଳ ପଦାର୍ଥ ଦେଇ ତାହା ପୂରଣ କରିବା । (୨) ଖାଦ୍ୟପଦାର୍ଥ ଦେବା (୩) ଉପଯୁକ୍ତ ଜୀବାଣୁନାଶକ ଔଷଧ ଦେଇ ଚିକିତ୍ସା କରିବା (୪) ବିଶୁଦ୍ଧ ପାନୀୟ ଜଳ ଓ (୫) ପରିବେଶର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଧ୍ୟାନ ଦେବା ।

ଝାଡ଼ାବାନ୍ତିରେ ଆକ୍ରାନ୍ତ ହୋଇଥିବା ଶିଶୁକୁ ପ୍ରାଥମିକ ଚିକିତ୍ସାରେ କୌଣସି ଉପଶମ ନହେଲେ ତୁରନ୍ତ ଡାକ୍ତରଙ୍କୁ ଦେଖାଇ ଔଷଧ ଦେବା ଉଚିତ । ଝାଡ଼ା ସମ୍ପୂର୍ଣ୍ଣ ଭଲ ନହେଲେ କଠିନ ଖାଦ୍ୟ ଦେବା ଉଚିତ ନୁହେଁ । ମାତ୍ର ଶିଶୁ ମା'ଠାରୁ କ୍ଷୀର ଖାଇବା ମନା ନୁହେଁ । ପୃଥିବୀର ଦୁଇତୃତୀୟାଂଶ ଲୋକେ ଉପଯୁକ୍ତ ସ୍ୱାସ୍ଥ୍ୟକର ପରିବେଶରେ ବାସ କରନ୍ତି ନାହିଁ । ତେଣୁ ପାରିପାର୍ଶ୍ୱିକ ଓ ବ୍ୟକ୍ତିଗତ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଉପଯୁକ୍ତ ଦୃଷ୍ଟିଦେବା ଆବଶ୍ୟକ । ଦାରିଦ୍ର୍ୟ, ନିରକ୍ଷରତା ଓ ଅଜ୍ଞାନତାର ଦୂରୀକରଣ ଦ୍ୱାରା ବ୍ୟକ୍ତିଗତ ପରିଷ୍କାର ପରିଚ୍ଛନ୍ନତା ସୁଧାରି ହେବ । କୂଅ, ପୋଖରୀ ଜଳ ନିୟମିତ ବିଶୋଧନ କଲେ ଓ ପିତାମାତା ଶିଶୁକୁ ଖୁଆଇବା ପୂର୍ବରୁ ନିଜର ହାତ, ଶିଶୁର ଗିନା, ଗ୍ରାମଚ ଓ ଦୁଧବୋତଲ ଭଲଭାବେ ପରିଷ୍କାର କରିବା ଆବଶ୍ୟକ । ଦୁଧବୋତଲ ଫୁଟାଇଲେ ଏହା ଉତ୍ତମରୂପେ ବିଶୋଧିତ ହୁଏ । ଏହାକୁ ସବୁବେଳେ ଘୋଡ଼ାଇ ରଖିଲେ ମାଛି ବସିବେ ନାହିଁ । ମାତୃ ଦୁଗ୍ଧ ଖାଇଲେ ଶିଶୁ ବିଶୁଦ୍ଧ ଖାଦ୍ୟ ପାଇବା ସଙ୍ଗେ ସଙ୍ଗେ ରୋଗ ନିରୋଧ ଶକ୍ତି ପାଏ । ଏଣୁ ମା' ମାନେ ଶିଶୁମାନଙ୍କୁ ନିଜର ସ୍ତନ୍ୟପାନ କରାଇବା ଉଚିତ । ଏହା ଦ୍ୱାରା ଶିଶୁର ଡିହାଇଡ୍ରେସନ ରୋକାଯାଇ ପାରିବ । ମାତୃ ଦୁଗ୍ଧରେ ଆଇ.ଜି.ଏ., ଲିମ୍ଫୋସାଇଟ୍ସ୍, ଲାକ୍ଟୋଫେରିନ୍, ଲାଇସୋଜୋମ୍ ପ୍ରଭୃତି ଶିଶୁ ଶରୀର ମଧ୍ୟକୁ ଯାଇ ବିଭିନ୍ନ ରୋଗକାରୀ ଜୀବାଣୁଙ୍କର ବିନାଶ ସାଧନ କରିଥାଏ । ତେଣୁ ଏଥିପ୍ରତି ମା' ମାନଙ୍କ ମଧ୍ୟରେ ସ୍ତନ୍ୟପାନ ସମ୍ପର୍କରେ ସଚେତନତା ଜାଗ୍ରତ କରିବା ଉଚିତ ।

ପ୍ରସୂତି ଓ ସ୍ତ୍ରୀରୋଗ ବିଭାଗ,
ଇ.ଏସ୍.ଆଇ. ହସ୍ପିଟାଲ,
ଭୁବନେଶ୍ୱର–୩, ଖୋର୍ଦ୍ଧା



ଦିଲ୍ଲୀ ଅଭିମୁଖେ ଯାତ୍ରା କରୁଥିବା ରେଲୱେ ଗୃହ କମିଟିର ସଦସ୍ୟମାନେ ଭୁବନେଶ୍ୱର ବିମାନ ବନ୍ଦରରେ (୨୩/୭) ।

# ଦାର୍ଶନିକ ଗୁରୁ ରାଧାକୃଷ୍ଣନ୍

● କୁମାରୀ ଧନଲକ୍ଷ୍ମୀ ମହାନ୍ତି

ଆମର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ୧୮୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖ ଦିନ ମାଡ୍ରାଜର ଗୋଟିଏ କ୍ଷୁଦ୍ର ଗ୍ରାମର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପୂର୍ବ ପ୍ରଥା ଅନୁସାରେ ତାଙ୍କର ପ୍ରକୃତି ବାସସ୍ଥାନ ସର୍ବପଲ୍ଲୀ ଗ୍ରାମରେ ହୋଇଥିବାରୁ ତାଙ୍କ ନାମ ପୂର୍ବରୁ ସର୍ବପଲ୍ଲୀ ସଂଯୋଗ କରାଯାଇଥିଲା । ତେଣୁ ସେ ସର୍ବପଲ୍ଲୀ ରାଧାକୃଷ୍ଣନ୍ ନାମରେ ସୁପରିଚିତ । ପିତା ବୀରସ୍ୱାମୀଙ୍କର ଆର୍ଥିକ ଅବସ୍ଥା ଏତେ ସ୍ୱଚ୍ଛଳ ନଥିଲା । ନିଜେ ପୁରୋହିତ ଭାବେ କାର୍ଯ୍ୟକରି ଯାହାକିଛି ଅର୍ଥ କରିଥିଲେ ସେଥିରେ ପାଞ୍ଚପୁତ୍ର କନ୍ୟାଙ୍କ ସମେତ ସ୍ତ୍ରୀ, ସ୍ୱାମୀ ରହିବା ନିମିତ୍ତ କଷ୍ଟ ହେଉଥିଲା । ଅସାଧାରଣ ଦେବଭକ୍ତି ଆନ୍ତରିକ ଶୁଦ୍ଧଗତି ଓ ତୀକ୍ଷ୍ଣ ସ୍ମରଣ ଶକ୍ତି ତଥା ସହପାଠୀଙ୍କ ପ୍ରତି ଭଦ୍ର ବ୍ୟବହାର ଯୋଗୁଁ ସେ ସମସ୍ତ ଛାତ୍ର ଓ ଶିକ୍ଷକଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଦାରିଦ୍ର୍ୟ ହେତୁ ସମସ୍ତ ସମୟରେ ତାଙ୍କ ମନକୁ ନାନା ଦୁଶ୍ଚିନ୍ତା ଆସୁଥିଲା । ମାତ୍ର କର୍ତ୍ତବ୍ୟ ପଥରେ କେବେ ତ୍ରୁଟି କରିନଥିଲେ । ବରଂ ଅଗ୍ନି ସଂଯୋଗରେ ସୁନା ତେଜିୟାନ୍ ହେଲା ପରି ତାଙ୍କର ମାନସିକ ଦୃଢତା ଅଧିକରୁ ଅଧିକତର ହେଉଥିଲା । ପ୍ରଗାଢ ଅଧ୍ୟବସାୟ ଦ୍ୱାରା ସେ ବି.ଏ. ଦର୍ଶନ ଅନର୍ସ ସହ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । ପରେ ପରେ ମାଡ୍ରାଜ କଲେଜର ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାସ୍ କଲେ ।

ଅଧ୍ୟୟନ ପ୍ରତି ସ୍ପୃହା, ଛାତ୍ରବତ୍ସଳତା, ଲବ୍ଧଜ୍ଞାନ ପରିବେଷଣ କରିବାର ପରିଷ୍କୃତ ଶୈଳୀ, ଏ ତିନୋଟି ଗୁଣ ଉପରେ ହିଁ ଜଣେ ଶିକ୍ଷକଙ୍କର ସ୍ୱକୀୟତ୍ୱ ନିର୍ଭର କରେ । ଡକ୍ଟର ରାଧାକୃଷ୍ଣନ୍ ଥିଲେ ପୂର୍ଣ୍ଣମାତ୍ରାରେ ଏ ତିନିଗୁଣର ଅଧିକାରୀ । ସେ ଅନୁଭବ କରିଥିଲେ ଯେ ଯେଉଁ ବ୍ୟକ୍ତି ଯେତେ ଅଧ୍ୟୟନ କରେ ସେ ସେତେ ବୁଝିପାରେ । ସେ କହୁଥିଲେ ଯେ ଜ୍ଞାନ ସମୁଦ୍ର ପରି ବିଶାଳ ଏବଂ ମନୁଷ୍ୟର ଜୀବନକାଳ ସୀମିତ । ଏହି ସୀମିତ ସମୟ ମଧ୍ୟରେ ଜ୍ଞାନ ସମୁଦ୍ର ପାରି ହେବାକୁ କାହାରି ପକ୍ଷେ ସମ୍ଭବ ନୁହେଁ । ଦର୍ଶନ ଏକ ଜଟିଳ ଶାସ୍ତ୍ର । ଯେତେ ପ୍ରାଞ୍ଜଳ ଭାବରେ ବୁଝାଇଲେ ମଧ୍ୟ ସମସ୍ତ ସମୟରେ ଛାତ୍ରମାନେ ତାହା ବୁଝିବା ସମ୍ଭବ ହେଉନଥିଲା । ଯେକୌଣସି ଛାତ୍ର ଯେକୌଣସି ସମୟରେ ରାଧାକୃଷ୍ଣନ୍‌ଙ୍କ ଘରକୁ ଯାଇ ସନ୍ଦେହ ମୋଚନ କରିବାରେ ବାଧା ନଥିଲା । ଦାରିଦ୍ର୍ୟତା କାହାର ଜ୍ଞାନଲାଭ ଦିଗରେ ଅନ୍ତରାୟ ନୁହେଁ । ନିଜ ଜୀବନର ଅଭିଜ୍ଞତାକୁ ଭାବିଦି ରଖି ଗରିବ ଛାତ୍ରମାନଙ୍କୁ ବହି କିଣିଦେବା, ପରୀକ୍ଷା ଫିସ୍ ଦେଇ କରିବା ଇତ୍ୟାଦି ଯୋଗାଇ ଦେଇ ଗୁରୁ ପରିବର୍ତ୍ତେ ସେ ପିତାର କାର୍ଯ୍ୟ ସମ୍ପାଦନ କରୁଥିଲେ । କୌଣସି ବିଦେଶୀ ବିଶ୍ୱବିଦ୍ୟାଳୟକୁ ନ ଯାଇ ସ୍ୱଳ୍ପକାଳ ମଧ୍ୟରେ ଡକ୍ଟର ଉପାଧି ଲାଭ କରିଥିଲେ ।

ସଂସ୍କୃତ ଶାସ୍ତ୍ରରେ ଗୁରୁ ଶବ୍ଦର ବିଶ୍ଳେଷଣାତ୍ମକ ଅର୍ଥ ହେଉଛି, ନିଜେ ଗୁଣାତୀତ ଓ ରୂପ ବର୍ଜିତ ଅନ୍ଧକାର ମଧ୍ୟରୁ ଆଲୋକକୁ ନେଇ ଯାଉଥିବାରୁ ସେ ଆମର ଗୁରୁ ଭାବେ ପୂଜା ପାଆନ୍ତି । ଏହି ଅନ୍ଧକାର ହେଉଛି ଆମକୁ ଗ୍ରାସ କରି ରହିଥିବା ଷଡରିପୁ । "ଗୁରୁ ସେ ସାକ୍ଷାତ୍ ଈଶ୍ୱର" ସେ ଯେ ଈଶ୍ୱରଙ୍କଠାରୁ ଅଭିନ୍ନ ଏହାର ଯଥେଷ୍ଟ ପ୍ରମାଣ ଆମ ଶାସ୍ତ୍ରରେ ରହିଛି । ଜୀବନରେ ସବୁ ଐଶ୍ୱର୍ଯ୍ୟ ପାଇ ମଧ୍ୟ ଯଦି ଗୁରୁ ଆଶୀର୍ବାଦ ନାହିଁ, ତେବେ ବ୍ୟକ୍ତିର ଜୀବନ ବ୍ୟର୍ଥ ଓ ଅଭିଶପ୍ତ । ଭାରତୀୟ ପରମ୍ପରାରେ ଏହି ମହାନ୍ ଆଦର୍ଶକୁ ଗୁର୍ବାଷ୍ଟକ ଶ୍ଳୋକରେ ସୁନ୍ଦର ଭାବେ କୁହାଯାଇଛି ।

'ଶରୀରଂ ସୁରୂପଂ ସଦା ରୋଗ ମୁକ୍ତଂ,
ଯଶଶ୍ଚାରୁ ଚିତ୍ରଂ ଧନଂ ମେରୁତୁଲ୍ୟଂ
ଗୁରୋରଙ୍ଘ୍ରି ପଦ୍ମେ ମନଶ୍ଚେ ନ ଲଗ୍ନଂ,
ତତଃ କିଂ ତତଃ କିଂ ତତଃ କିଂ ତତଃ କିଂ ?
କଳତ୍ରଂ ଧନଂ ପୁତ୍ର ପୌତ୍ରାଦି ସର୍ବଂ,
ଗୃହ ବାନ୍ଧବାଃ ସର୍ବ ମେତଦ୍ଧି ଜାତ
ଗୁରୋରଙ୍ଘ୍ରି ପଦ୍ମେ ମନଶ୍ଚେନ୍ନଲଗ୍ନଂ,
ତତଃ କିଂ ତତଃ କିଂ ତତଃ କିଂ ତତଃ କିଂ"

ଆମ ସଂସ୍କୃତିରେ ଗୁରୁ ଶିଷ୍ୟ ପରମ୍ପରା ଯେପରି ଅର୍ଥପୂର୍ଣ୍ଣ ସେହିପରି ଐତିହ୍ୟପୂର୍ଣ୍ଣ । ଗୀତା କହେ ଜ୍ଞାନଠାରୁ ପବିତ୍ରତର ଆଉ କିଛି ନାହିଁ । ଜ୍ଞାନଲାଭ ନିମନ୍ତେ ନିରନ୍ତର ଅଭ୍ୟାସ ଯଥେଷ୍ଟ ପୁରସ୍କାର ସହ କରିବାକୁ ହୁଏ । ଯିଏ ସିଏ ଗୁରୁ ହୋଇପାରନ୍ତି ନାହିଁ । ଯାହାକୁ ତାକୁ ଶିଷ୍ୟ କୁହାଯାଇ ପାରିବ ନାହିଁ । ଭାରତୀୟ ପରମ୍ପରାରେ ଗୁରୁ ହେବାରେ ଯଥେଷ୍ଟ ଗୁରୁ ଦାୟିତ୍ୱ ରହିଛି । ସେହିପରି ଅନୁରୂପ ଭାବେ ଶିଷ୍ୟ ପାଇଁ ବହୁ ସଦ୍‌ଗୁଣ ଆବଶ୍ୟକତା ରହିଛି । ରାମାୟଣ ଯୁଗରେ ବଶିଷ୍ଠ ଥିଲେ ଗୁରୁ ଶ୍ରୀରାମଚନ୍ଦ୍ର ମହାପ୍ରଭୁ ଥିଲେ ତାଙ୍କର ଶିଷ୍ୟ । ମହାଭାରତ ସମୟରେ ସାନ୍ଦୀପନୀ ଥିଲେ ଗୁରୁ, ଭଗବାନ୍ ଶ୍ରୀକୃଷ୍ଣ ଥିଲେ ଶିଷ୍ୟ । ଶିଷ୍ୟମାନଙ୍କ ମଧ୍ୟରେ ସତ୍ୟକାମ, ଜାବାଳ, ଆରୁଣି, ନଚିକେତା ଓ ଏକଲବ୍ୟ, ଗୁରୁଭାବରେ ମହର୍ଷି ବ୍ୟାସ, ନାରଦ, ଶୁକ, ଶୌନକ, ବିଶ୍ୱାମିତ୍ର, ଶଙ୍କର, ମାଧ୍ୱାଚାର୍ଯ୍ୟ, ଚୈତନ୍ୟ ଆମ ଭାରତୀୟ ପରମ୍ପରାର ଜ୍ୱଳନ୍ତ ପ୍ରତୀକ । ଭାରତୀୟ ପରମ୍ପରାରେ ଗୁରୁଶିଷ୍ୟ ସମ୍ପର୍କ ଅତ୍ୟନ୍ତ ନିଗୂଢ ତଥା ମହନୀୟ । ଆଚାର୍ଯ୍ୟ ବିନୋବା କହିଥିଲେ, "ଗୁରୁମାନେ ଛାତ୍ର ପରାୟଣ

ଛାତ୍ରମାନେ ଗୁରୁପରାୟଣ ଏବଂ ଉଭୟେ ବିଦ୍ୟାପରାୟଣ ହେବା ବାଞ୍ଛନୀୟ ।" ଶିକ୍ଷାଦାନ ଏବଂ ଶିକ୍ଷା ଲାଭ ଉଭୟେ ସାତ୍ତ୍ୱିକ ଗୁଣର ବିକାଶ ଉପରେ ଆଧାରିତ । ତେବେ ମନ ସ୍ଥିର ନହେଲେ ଅର୍ଥାତ୍ ସଂଯମତା ନଥିଲେ ନିଜେ ନିୟନ୍ତ୍ରିତ ନହେଲେ ବିଦ୍ୟାଲାଭ ହୁଏ ନାହିଁ । କବିଗୁରୁ ରବିଠାକୁରଙ୍କ ଭାଷାରେ "ଜଳୁଥିବା ଦୀପ ଅନ୍ୟକୁ ଆଲୋକିତ କରିବା ପରି ଗୁରୁ ନିଜେ ଜ୍ଞାନବ୍ରତୀ ହୋଇ ଶିଷ୍ୟ ମନରେ ଜ୍ଞାନ ପିପାସା ସୃଷ୍ଟି କରିବା ଉଚିତ୍ ।" ରାଧାକୃଷ୍ଣନ୍ ଥିଲେ ଏହିପରି ଜଣେ ପ୍ରାତଃସ୍ମରଣୀୟ ଗୁରୁ । ସେ ଜାତିର ପିତା ମହାତ୍ମା ଗାନ୍ଧୀ, ଶ୍ରୀ ଅରବିନ୍ଦ ଓ ରବୀନ୍ଦ୍ରନାଥଙ୍କ ପରି ପ୍ରାତ୍ୟହିକ ଜୀବନରେ ବ୍ୟବହାର କରିଥିଲେ । ସେ ଥିଲେ ଜାତିର ଆଗ୍ରଯ୍ୟ, ଆଚରଣ ଶୁଦ୍ଧ, ସତ୍ୟନିଷ୍ଠ, ଧାର୍ମିକ, ଦେଶପ୍ରେମୀ ଓ ପରହିତକାରୀ । ତାଙ୍କୁ ଅଜାତ ଶତ୍ରୁ କହିଲେ ଭୁଲ୍ ହେବ ନାହିଁ । ସେ ଥିଲେ ଭାରତର ମହାର୍ଘ ରାଷ୍ଟ୍ରନାୟକ । ଗୁରୁ ଶବ୍ଦରେ ଶାସ୍ତ୍ର ଅନୁସାରେ ଯାହା କୁହାଯାଇଛି

"ଗୁରୁଃବ୍ରହ୍ମା ଗୁରୁଃବିଷ୍ଣୁ ଗୁରୁଃଦେବ ମହେଶ୍ୱର,
ଗୁରୁଃସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେନମଃ ।"

ଯଥାର୍ଥରେ ତାଙ୍କ ପାଇଁ ପ୍ରଯୁଜ୍ୟ ।

୧୯୦୯ ମସିହାରେ ସେ ମାଡ୍ରାସ୍‌ର ପ୍ରେସିଡେନ୍‌ସି କଲେଜରେ ଦର୍ଶନ ବିଭାଗରେ ସହକାରୀ ପ୍ରଫେସର ଭାବେ ନିଯୁକ୍ତ ହେଲେ । ୧୯୧୬ ମସିହା ପର୍ଯ୍ୟନ୍ତ ସେଠାରେ ଶିକ୍ଷକତା କରି ୧୯୧୮ରେ ମହୀଶୂର ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗ ପ୍ରଫେସର୍ ଭାବେ କାର୍ଯ୍ୟଭାର ଗ୍ରହଣ କଲେ । ୧୯୨୧ ଠାରୁ ୧୯୩୧ ପର୍ଯ୍ୟନ୍ତ କଲିକତା ବିଶ୍ୱବିଦ୍ୟାଳୟର ପ୍ରଫେସର୍ ପଦବୀରେ ରହିଥିଲେ । ୧୯୩୧ରୁ ୧୯୩୬ ପର୍ଯ୍ୟନ୍ତ ଥିଲେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି । ୧୯୩୯ରୁ ୧୯୪୮ ପର୍ଯ୍ୟନ୍ତ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଦାୟିତ୍ୱ ତୁଲାଇଲେ । ଏହି ସମସ୍ତ ମଧ୍ୟରେ ରାଧାକୃଷ୍ଣନ୍ ସେ ନିଜକୁ ଜଣେ ଦକ୍ଷ ପ୍ରଶାସକ ତଥା ଶିକ୍ଷାବିତ୍ ଭାବେ ପ୍ରତିଷ୍ଠିତ କରିପାରିଥିଲେ । ମହୀଶୂର ବିଶ୍ୱବିଦ୍ୟାଳୟରୁ କଲିକତା ବିଶ୍ୱବିଦ୍ୟାଳୟକୁ ଚାଲିଯିବା କଥା ଶୁଣି ଛାତ୍ରମାନେ କାନ୍ଦି ପକାଇଥିଲେ ଏବଂ ମୁଣ୍ଡରେ ବୋହି ବୋହି ତାଙ୍କ ବ୍ୟବହାର୍ଯ୍ୟ ଜିନିଷପତ୍ର ଗାଡ଼ିପାଖରେ ପହଞ୍ଚାଇ ଦେଇଥିଲେ । ଏଥିରୁ ତାଙ୍କର ଶିଷ୍ୟପ୍ରୀତି ଏବଂ ଛାତ୍ରଙ୍କର ଗୁରୁଭକ୍ତି ସହଜରେ ଅନୁମେୟ । ୧୯୩୬ରୁ ୧୯୫୨ ମସିହା ପର୍ଯ୍ୟନ୍ତ ସେ ହେଉଛନ୍ତି ପ୍ରଥମ ଭାରତୀୟ ଯେ କି ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଏକ ଚେୟାର ଏକ କାଳୀନ ଭାବେ ଅଲଙ୍କୃତ କରିଥିଲେ । ୧୯୪୬ରୁ ୧୯୫୦ ମଧ୍ୟରେ ସେ ବହୁବାର ୟୁନେସ୍କୋକୁ ଭାରତୀୟ ପ୍ରତିନିଧି ଦଳର ନେତା ଭାବେ ଯାଇଥିଲେ । ୧୯୪୮ରେ ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ପ୍ରଥମ ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନର ଅଧ୍ୟକ୍ଷ ହୋଇଥିଲେ, ୧୯୪୮ରେ ୟୁନେସ୍କୋ କାର୍ଯ୍ୟକାରୀ ବୋର୍ଡ଼ର ଅଧ୍ୟକ୍ଷ । ୧୯୫୨ରେ ୟୁନେସ୍କୋର ସଭାପତି । ୧୯୫୧ରେ ପି.ଇ.ଏନ୍‌ର ଉପ ସଭାପତି ଏବଂ ବ୍ରିଟିଶ୍ ଏକାଡେମୀର ଅନରାରୀ ଫେଲୋ । ୧୯୬୨ରେ ହାରାର୍ଡ଼ ବିଶ୍ୱବିଦ୍ୟାଳୟରେ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ ପ୍ରତିନିଧିତ୍ୱ ।

ରାଧାକୃଷ୍ଣନ୍ ଜଣେ ପ୍ରସିଦ୍ଧ ଲେଖକ ଭାବରେ ଜୀବନ କାଳ ମଧ୍ୟରେ ପ୍ରାୟ ୧୫୦ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରି ଯାଇଛନ୍ତି । ପୁସ୍ତକଗୁଡ଼ିକ ଦାର୍ଶନିକ, ବ୍ରହ୍ମଜ୍ଞାନ, ନୀତିଜ୍ଞାନ, ଶିକ୍ଷା, ସାମାଜିକ ଓ ସାଂସ୍କୃତିକ ବିଷୟବସ୍ତୁ ଉପରେ ଆଧାରିତ ।

୧୯୪୬ରେ ପ୍ରଥମ କରି ସେ ଜନସେବା କ୍ଷେତ୍ରରେ ପ୍ରବେଶ କରି "ସାମ୍ବିଧାନିକ ସଭା"ର ସଦସ୍ୟ ହୋଇଥିଲେ । ୧୯୪୯ରୁ ୧୯୫୨ ମସିହା ପର୍ଯ୍ୟନ୍ତ ଋଷିଆରେ ଭାରତର ରାଷ୍ଟ୍ରଦୂତ ଭାବେ ଅତି ସଫଳତାର ସହ କାର୍ଯ୍ୟ ତୁଲାଇଥିଲେ । ସେ ହେଉଛନ୍ତି ପ୍ରଥମ ଭାରତୀୟ ଯେ କି ପ୍ରଥମେ ମହାମାନ୍ୟ ଷ୍ଟାଲିନଙ୍କୁ ସାକ୍ଷାତ୍ କରିଥିଲେ । ତାଙ୍କ ସହିତ ସାକ୍ଷାତ୍ ପରେ ଷ୍ଟାଲିନ୍ ମତ ଦେଇଥିଲେ ଯେ, "ସେ ଜଣେ ସଂକୀର୍ଣ୍ଣ ମନା ଦେଶପ୍ରେମୀ ନୁହନ୍ତି । ନିର୍ଯ୍ୟାତୀତ ମାନବ ଜାତି ଲାଗି ତାଙ୍କର ହୃଦୟ ସହାନୁଭୂତିରେ ବିଗଳିତ ।"

ରାଷ୍ଟ୍ରର ସର୍ବୋଚ୍ଚ ଆସନରେ ବସି ମଧ୍ୟ ସେ ନିଜକୁ କେବେ ବଡ଼ ବୋଲି ଭାବୁ ନଥିଲେ । ରାଷ୍ଟ୍ରପତି ହିସାବରେ ତାଙ୍କର ଦରମା ମାସିକ ୧୦,୦୦୦ ଟଙ୍କା ପ୍ରାପ୍ୟ ଥିବାବେଳେ ସେ ମାତ୍ର ୨,୦୦୦ ଟଙ୍କା ଗ୍ରହଣ କରୁଥିଲେ । ସେ ସମୟରେ ତାଙ୍କୁ କେହି ଦେଖା କରିବାକୁ ଚାହିଁଲେ ଯେକୌଣସି ବ୍ୟକ୍ତି ପ୍ରତି ସପ୍ତାହରେ ମାତ୍ର ୨ ଦିନ ପୂର୍ବରୁ କୌଣସି କାର୍ଯ୍ୟକ୍ରମ ପ୍ରସ୍ତୁତ ନ କରି ମଧ୍ୟ ତାଙ୍କୁ ସାକ୍ଷାତ୍ କରିପାରୁଥିଲେ । ରାଧାକୃଷ୍ଣନ୍ ଧଳା ରଙ୍ଗର କଲରେ ଖାଣ୍ଟିଭାରତୀୟ ଧଳା ପୋଷାକ ପିନ୍ଧୁଥିଲେ । କ୍ଷମତାରେ ଅଧିଷ୍ଠିତ ଥାଇ ଯେଉଁମାନେ ଦୁର୍ନୀତିଠାରୁ ଦୂରରେ ରହନ୍ତି, ଅଶେଷ କ୍ଷମତାର ଅଧିକାରୀ ହେଲେ ମଧ୍ୟ ଅହଙ୍କାର ଯେଉଁମାନଙ୍କ ହୃଦୟରେ ସ୍ଥାନ ନ ପାଏ, ଅମାପ ଧନ ସମ୍ପତ୍ତି ପ୍ରତିପତ୍ତି ଥାଇ ମଧ୍ୟ ଯିଏ ବଡ଼ କି ଜନସାଧାରଣଙ୍କଠାରୁ ଦୂରେଇ ଯାନ୍ତି ନାହିଁ ସେହିମାନେ ହିଁ ପ୍ରକୃତରେ ରାଜର୍ଷି । ରାଧାକୃଷ୍ଣନ୍ ଥିଲେ ଏହିପରି ଜଣେ ରାଜର୍ଷି । ଯୋଉଁ ତାଙ୍କ ହୃଦୟରେ ଗର୍ବର ସତ୍ତା ନଥିଲା । ବରଂ ବହୁ ମାନବିକ ଗୁଣର ଅଧିକାରୀ ଥିଲେ । ଯେକୌଣସି ବ୍ୟକ୍ତି ଅସୁବିଧାରେ ପଡ଼ି ତାଙ୍କ ନିକଟକୁ ଗଲେ ସେ ଖୁବ୍ ଧୈର୍ଯ୍ୟର ସହ ତା'ର ସମାଧାନ କରୁଥିଲେ । ତାଙ୍କର ସହାନୁଭୂତିପୂର୍ଣ୍ଣ ବ୍ୟକ୍ତିତ୍ୱ ଓ ସାର୍ବଜନୀନ ସ୍ନେହ, ଯୋଗୁଁ ସେ ଜଣେ ପ୍ରଶଂସନୀୟ ପଥପ୍ରଦର୍ଶକ, ଦାର୍ଶନିକ ଓ ବନ୍ଧୁ ଭାବେ ସାରା ଭାରତରେ ପରିଚିତ । ଡକ୍ଟର ରାଧାକୃଷ୍ଣନ୍‌ଙ୍କ ମତରେ, ନମନଶୀଳତା ଓ ସମନ୍ୱୟ ଭାରତୀୟ ସଂସ୍କୃତିର ଭିତ୍ତିଭୂମି । ଏହାହିଁ ସେ ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରଚାର କରିଥିଲେ ।

ଡକ୍ଟର ରାଧାକୃଷ୍ଣନ୍ ଭାରତର ଉପରାଷ୍ଟ୍ରପତି ଥିଲେ । ପରେ ପରେ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ସେ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେବାପରେ କେବଳ ଭାରତ କାହିଁକି ସମଗ୍ର ପୃଥିବୀର ଯୋଗ୍ୟ ଓ ବିଜ୍ଞବ୍ୟକ୍ତିମାନେ ତାଙ୍କ ନିର୍ବାଚନରେ ଆନନ୍ଦିତ ହୋଇ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ରାଷ୍ଟ୍ରପତି ଭାବରେ ତାଙ୍କର ଚରମ ସ୍ୱପ୍ନ ଥିଲା "ବିଶ୍ୱଶାନ୍ତି ପ୍ରତିଷ୍ଠା" । ସେଥିପାଇଁ ସେ ବହୁ ଦେଶ ବୁଲିଥିଲେ ଏବଂ ଭାରତକୁ ଅନ୍ୟ ଦେଶମାନଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ କରିଥିଲେ ।

ଡକ୍ଟର ରାଧାକୃଷ୍ଣନ୍ ସତ୍ୟ ଓ ନ୍ୟାୟ ପୂଜାରୀ ଥିଲେ । ବିଭିନ୍ନ ପଦବୀରେ ଥିଲାବେଳେ ସହଜ ଭାବେ ଜାତୀୟ ଓ ଆନ୍ତର୍ଜାତିକ ସମସ୍ୟାର ସମାଧାନ କରିବାକୁ ସମର୍ଥ ହୋଇଥିଲେ ଏବଂ ଦେଶ ବିଦେଶରେ ମାତୃଭୂମିର ଗୌରବ ଓ ମର୍ଯ୍ୟାଦା ବୃଦ୍ଧି କରିବା ପାଇଁ ଉଦ୍ୟମ କରି ପୃଥିବୀର ଜଣେ ଶ୍ରେଷ୍ଠ ମନୀଷୀ ଭାବେ ଗୌରବ ଅର୍ଜନ କରିପାରିଥିଲେ ।

ସ୍ୱାଧୀନତା ସଂଗ୍ରାମର ଜଣେ ଦୃଢ଼ ସମର୍ଥକ ତଥା ପ୍ରସିଦ୍ଧ ଦାର୍ଶନିକ ଭାବରେ ସେ ସର୍ବଜ୍ଞ ପରିଚିତ । ତାଙ୍କ ହୃଦୟ ସର୍ବଦା ଭଗବାନଙ୍କ ପ୍ରେମରେ ଆଚ୍ଛନ୍ନ ଥିଲା । କୌଣସି ଧର୍ମକୁ ଘୃଣା କରୁଥିଲେ ନାହିଁ ଏବଂ ନଥିଲେ । ତେଣୁ ମନ୍ଦିର, ମସଜିଦ୍, ଚର୍ଚ୍ଚ ଇତ୍ୟାଦି ସବୁ ସ୍ଥାନରେ

ଶିକ୍ଷାଦାନ ଦେଉଥିଲେ । ତେଣୁ ସେ ଥିଲେ ବିଶ୍ୱର ସବୁ ଧର୍ମ ପ୍ରତି ସହନଶୀଳ ଏବଂ ଏଥିରୁ ତାଙ୍କର ଧର୍ମନିରପେକ୍ଷତା ସ୍ପଷ୍ଟ ପ୍ରମାଣିତ ହୁଏ । ସେ କହିଥିଲେ ସତ୍ୟ କୌଣସି ଧର୍ମର ଏକଚାଟିଆ ଅଧିକାର ନୁହେଁ । ଈଶ୍ୱରଙ୍କ ସାନ୍ନିଧ୍ୟ ନିମନ୍ତେ କୌଣସି ଏକ ନିର୍ଦ୍ଦିଷ୍ଟ ପନ୍ଥା ନାହିଁ । ପକ୍ଷୀଟିଏ ଆକାଶରେ ଉଡ଼ିଯାଏ । ମାତ୍ର ତା'ର ଉଡ଼ିଯିବା ପଛରେ କୌଣସି ଚିହ୍ନ ରହେ ନାହିଁ । ଯେତେ ସାଧକ ସେତେ ପଥ । ମନୁଷ୍ୟ ଯେତେବେଳେ ତା' ସାଧନା ବଳରେ ସଂସାର ରୂପକ ମାୟାଜାଲରୁ ମୁକ୍ତିଲଭି ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ କରେ, ସେତେବେଳେ ତା'ମନରେ ସଂକୀର୍ଣ୍ଣତା ରହେ ନାହିଁ । ସମସ୍ତଙ୍କୁ ସେ ସମାନ ଦୃଷ୍ଟିରେ ଦେଖେ । ସେତିକିବେଳେ ହିଁ ସେ ଜୀବନରେ ପୂର୍ଣ୍ଣତା ଲାଭ କରେ ।

ମହାନ୍ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍ ୧୯୭୫ ମସିହା ଅପ୍ରେଲ୧୭ ତାରିଖ ଦିନ ମାନ୍ଦ୍ରାଜଠାରେ ୮୬ ବର୍ଷ ବୟସରେ ଇହଧାମରୁ ବିଦାୟ ନେଲେ ।ଦିଗ୍‌ବିଜୟୀ ବୀର ଭଳି ଶଙ୍କର ନଦୀ ଦୁର୍ଗର ରାଜ୍ୟ ପରେ ରାଜ୍ୟ ଜୟ କରିନଥିଲେ ମାତ୍ର ସେ କୋଟି କୋଟି ହୃଦୟକୁ ଜୟ କରିଥିଲେ ନିଜର ସ୍ନେହ, ପ୍ରେମ, ଦାନ ଓ ସର୍ବୋପରି ନିଜର ମାନବିକତା ବଳରେ । ସାରାଜୀବନ କଟାଇ ଦେଇଥିଲେ ସତ୍ୟ ସାଧୁତାର ଅନୁସନ୍ଧାନରେ ।

"ସର୍ବେ ଭବନ୍ତୁ ସୁଖୀନୋ, ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ ଦୁଃଖଭାଗ୍ ଭବେତ୍‌"

ଏହି ଉପନିଷଦୀୟ ବାକ୍ୟର ରାଧାକୃଷ୍ଣନ୍ ଥିଲେ ମହାନ୍ ପ୍ରବକ୍ତା । ଅସାଧାରଣ ପାଣ୍ଡିତ୍ୟ, କର୍ତ୍ତବ୍ୟନିଷ୍ଠା, ମାନବିକତା ଓ ନିଃସ୍ୱାର୍ଥପର ଦେଶ ସେବା ଯୋଗୁଁ ରାଧାକୃଷ୍ଣନ୍‌ଙ୍କୁ ଶ୍ରେଷ୍ଠ ଜାତୀୟ ସମ୍ମାନ "ଭାରତ ରତ୍ନ" ଉପାଧି ଦିଆଯାଇଥିଲା । ସେ ଭାରତର ଦର୍ଶନ, ସଂସ୍କୃତି ଓ ପରମ୍ପରାକୁ ବିଶ୍ୱ ସମ୍ମୁଖରେ ଅତି ଆଦର୍ଶ ଭାବେ ଉପସ୍ଥାପିତ କରିବାକୁ ଆପ୍ରାଣ ଚେଷ୍ଟା କରି ସଫଳତା ଲାଭ କରିଥିଲେ । ତାଙ୍କର ଜନ୍ମଦିନ ସେପ୍ଟେମ୍ବର ମାସ ୫ ତାରିଖ ଦିନଟି ସାରା ଭାରତରେ ଗୁରୁଦିବସ ରୂପେ ପାଳନ କରାଯାଉଛି । ଏହି ଅବସରରେ ଆମେ ତାଙ୍କରି ପଥରେ ଅନୁଗାମୀ ହେବା ପାଇଁ ଶପଥ ନେବା, ତାହାହିଁ ହେବ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି, ତାହାହିଁ ହେବ ଗୁରୁ ଦକ୍ଷିଣା ।

---

*ମାଷ୍ଟର୍–ଶ୍ରୀ ପ୍ରମୋଦ କିଶୋର ମହାନ୍ତି,*
*ପ୍ଲଟ୍ ନଂ–୫୭୭, ଶହୀଦନଗର ।*



ଢେଙ୍କାନାଳଠାରେ ସ୍ୱାଧୀନତା ଦିବସ ପାଳନ ଅବସରରେ ଅନୁଷ୍ଠିତ ରଣଦୌଡ଼ ପ୍ରତିଯୋଗିତାରେ କୃତୀ ପ୍ରତିଯୋଗୀଙ୍କୁ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ସିଲଡ୍ ପ୍ରଦାନ କରୁଛନ୍ତି ।

# ଜୁଆଙ୍ଗ ସଂସ୍କୃତି ଓ ଜୀବନଧାରା

● ଶ୍ରୀ ଫକୀର ଚରଣ ରାଉତ

ପୁରାଣ ପ୍ରସିଦ୍ଧ ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତି ସ୍ଥଳରେ ଗୋନାସିକା ପାହାଡ଼ ପର୍ବତ ଓ ବନଗିରି ବକ୍ଷରେ ବହୁ ପ୍ରାଚୀନ ଆଦିମ ମନୁଷ୍ୟର ଜୀବନ ଦର୍ଶନର ଦୃଷ୍ଟିପାତ ହୋଇଥାଏ । ତାହା ହେଲା ଜୁଆଙ୍ଗ ସମ୍ପ୍ରଦାୟ । କେନ୍ଦୁଝର ତଥା ସମଗ୍ର ଭାରତବର୍ଷରେ ଆଦିମ ଅଧିବାସୀଙ୍କ ମଧ୍ୟରେ ଏହି ଜୁଆଙ୍ଗ ଜାତି ପ୍ରାଚୀନ ଅଧିବାସୀ ଜାତି ରୂପେ ପରିଚିତ । ସେମାନେ ନିଜ ଉପରେ ଓ ନିଜ ଶକ୍ତି ଉପରେ ବିଶ୍ୱାସ କରିଥାନ୍ତି । ସେମାନେ ନିଜକୁ ସୃଷ୍ଟିର ପ୍ରଥମ ମନୁଷ୍ୟ ଓ ଋଷିମାନଙ୍କର ବଂଶଧର ବୋଲି ଭାବିଥାନ୍ତି । ଜୁଆଙ୍ଗମାନେ କାଳକ୍ରମେ ବିଭିନ୍ନ ସମ୍ପ୍ରଦାୟ ଓ କୁଳ୍ପରେ ବିଭକ୍ତ ହୋଇ ଓଡ଼ିଶାର ବନ ବନାନୀ ମଧ୍ୟରେ ବାସ କରିଥାନ୍ତି । ଜୁଆଙ୍ଗ ଶବ୍ଦର ଅର୍ଥ ମନୁଷ୍ୟ । ଏମାନଙ୍କ ଧର୍ମ ବିଶ୍ୱାସ ମଧ୍ୟରେ ସୂର୍ଯ୍ୟ ପୂଜା ଭୂତପ୍ରେତ ପୂଜା ବସୁମାତାର ପୂଜା ଅନ୍ୟତମ । ଜୁଆଙ୍ଗମାନେ ପୁନର୍ଜନ୍ମରେ ବିଶ୍ୱାସୀ । ଧର୍ମ କାର୍ଯ୍ୟ କଲେ ପୁଣି ମନୁଷ୍ୟ ଜନ୍ମ ଲାଭ କରିବା ଓ ପାପ କାର୍ଯ୍ୟକଲେ ପଶୁ ରୂପେ ଜନ୍ମ ଲାଭ କରିବାକୁ ଏମାନେ ବିଶ୍ୱାସ କରନ୍ତି । ଭୂତପ୍ରେତକୁ ଜୁଆଙ୍ଗମାନେ ବିଶ୍ୱାସ କରିଥାନ୍ତି । ସେମାନେ ସେମାନଙ୍କର ପୂର୍ବପୁରୁଷମାନଙ୍କୁ ପର୍ବ ପର୍ବାଣୀରେ ଖାଦ୍ୟପେୟ ଅର୍ପଣ କରିଥାନ୍ତି । ସେମାନେ ଘଞ୍ଚ ଜଙ୍ଗଲ ମଧ୍ୟରେ ନଦୀ ନାଳ କୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ବସତି ସ୍ଥାପନ କରି ରହିଥାନ୍ତି । କେତେ ଗୁଡ଼ିଏ ପଲ୍ଲୀ ଗ୍ରାମକୁ ନେଇ ଗୋଟିଏ ପିଢ଼ ହୋଇଥାଏ । ଏହି ପିଢ଼ମାନଙ୍କର ସର୍ବୋଚ୍ଚ ଦଳପତିଙ୍କୁ ସର୍ଦ୍ଦାର କୁହାଯାଏ । ଜୁଆଙ୍ଗମାନେ କେତେକ ଶ୍ରେଣୀରେ ବିଭକ୍ତ ହୋଇଥାଆନ୍ତି । ନିଜ ନିଜର ପିଢ଼କୁ ନେଇ ସେମାନେ ପରିଚୟ ଦେଇଥାଆନ୍ତି ଯଥା :- ଚମ୍ପେଇ ଜୁଆଙ୍ଗ, ବୃଦ୍ଧୀପଦା ଜୁଆଙ୍ଗ ଓ ଗୋନାସିକା ଜୁଆଙ୍ଗ ପ୍ରଭୃତି । ପ୍ରତ୍ୟେକ ଜୁଆଙ୍ଗ ଗାଁ ପାଇଁ ଜଣେ ସର୍ଦ୍ଦାର ଥାଆନ୍ତି । ସେମାନେ ସର୍ଦ୍ଦାରର ପରାମର୍ଶକ୍ରମେ ସମସ୍ତ କାର୍ଯ୍ୟ କରିଥାଆନ୍ତି । ଉକ୍ତ ସର୍ଦ୍ଦାରଙ୍କୁ ଡାକୁଆ ସାହାଯ୍ୟ କରିଥାଏ ।

ଜୁଆଙ୍ଗ ବସତିକୁ ନିରୀକ୍ଷଣ କଲେ, ଦେଖିବାକୁ ମିଳେ ସେମାନେ ଆଗ କାଳରେ ଗୁମ୍ଫା ଗରପଡ଼ ଆଚ୍ଛାଦିତ ଝରଣା କୂଳରେ ବସତି କରି ରହୁଥିଲେ । ସେମାନେ ଦେଖିବାକୁ ଉଚ୍ଚତ୍ ଧଳବିଆ ବର୍ତ୍ତର ଓ ଗୋରା ସ୍ୱଭାବର । ପୂର୍ବେ ଜୁଆଙ୍ଗମାନେ କୌଣସି ଲୁଗାପଟା ବ୍ୟବହାର କରୁନଥିଲେ । ଗଛର ପତ୍ର ଛେଲି ବା ବକଳ ପରିଧାନ କରି ମୁଣ୍ଡରୁ କଟି ପର୍ଯ୍ୟନ୍ତ ପୋହଳାରେ ଆବୃତ କରିଥାଆନ୍ତି ଓ ଜଙ୍ଗଲର ବହୁକାପ୍ତା ହାଡ଼ ଓ ଗୃଧ୍ର ପକ୍ଷୀର ହାଡ଼ରେ ତିଆରି ହାଡ଼ମାଳ ପକ୍ଷୀର ପର ଓ ଜଙ୍ଗଲର ପତ୍ର ଫୁଲ ପରିଧାନ କରିଥାଆନ୍ତି । ଏମାନେ ଗୋଡ଼ରେ ବାଙ୍କିଆ ଓ ବଷଣୀ ପିନ୍ଧିଥାନ୍ତି ମାତ୍ର ଅଧୁନାତନ ସଭ୍ୟତାର ଦ୍ରୁତ ବିକାଶରେ ନୋଲକ ଓ ନାକଫୁଲ ଓ ଟଙ୍କା ପଇସାକୁ ଝୁଲେଇକରି ପିନ୍ଧନ୍ତି । ସେମାନେ ସାଧାରଣଙ୍କ ପରି କୃଷିବାସ କରି ଜୀବିକାର୍ଜନ କଲେଣି । ପୂର୍ବପରି ଗଛର ଫଳ ମୂଳ ପଶୁ ଶୀକାର କରି ମାଂସ ଭକ୍ଷଣ କରିବା ଏବେ ମଧ୍ୟ ଗ୍ରାମମାନଙ୍କରେ ସାମାନ୍ୟ ଦୃଷ୍ଟି ଗୋଚର ହୋଇଥାଏ । ଧନୁଶର କଟୁରୀ ଖଣ୍ଡା ହେଉଛି ଜୁଆଙ୍ଗମାନଙ୍କର ପ୍ରଧାନ ଅସ୍ତ୍ର ଓ ଗୁଙ୍ଗୁ ମାଦଳ ଓ ବଂଶୀ ହେଉଛି ସେମାନଙ୍କର ବାଦ୍ୟ । ଖଣ୍ଡେ ଲୁହା ଖଣ୍ଡେ ଚକମକି ପଥର ଦ୍ୱାରା ଓ ଟସର ଶୋଷା ଦ୍ୱାରା ଜୁଆଙ୍ଗମାନେ ନିଆଁ ବାହାର କରନ୍ତି ଓ ହରଡ଼ କାଠିରେ କଣାକରି ଆଉ ଖଣ୍ଡେ କାଠିକୁ ଘୂରାଇଲେ ସେଥି ହୋଇ ମଧ୍ୟ ନିଆଁର ବ୍ୟବହାର କରିଥାନ୍ତି । ଜୁଆଙ୍ଗ ସ୍ତ୍ରୀ ନିଜ କର୍ମରତ ସମୟରେ ନିଜ ଛୁଆକୁ ପିଠିରେ ବୋକସ୍ତ କରି ନିଜ ଅଙ୍ଗରେ ଧରି ରଖିଥିବାର ଅଦ୍ୟାବଧି ଦେଖାଯାଏ । ସେମାନଙ୍କର ଭାଷା ବର୍ତ୍ତମାନ ଓଡ଼ିଆ । ପୂର୍ବରୁ ସେମାନେ ଜୁଆଙ୍ଗ ଭାଷା ଓ ଠାର ବ୍ୟବହାର କରୁଥିଲେ । ପୂର୍ବବର୍ତ୍ତୀ କାଳରେ ଜୁଆଙ୍ଗମାନେ ନିଜ ଶରୀରକୁ ଏପରି ହାଡ଼ ଓ ପୋହଳା ମାଳରେ ଆବୃତ କରି ରଖୁଥିଲେ ଯାହାଦ୍ୱାରାକି କୌଣସି ଅସ୍ତ୍ର ଶରୀରକୁ ସ୍ପର୍ଶ କରିପାରୁ ନ ଥିଲା ଓ ଏହା ହିଂସ୍ର ଜନ୍ତୁଙ୍କ ଆକ୍ରମଣରୁ ରକ୍ଷା କରିବାରେ ସହାୟକ ହେଉଥିଲା ।

ଜୁଆଙ୍ଗମାନେ ବର୍ତ୍ତମାନ ଗୃହକରି କୃଷିବାସ କରି ରହିବାକୁ ଶିଖିଲେଣି । ସେମାନଙ୍କର ପଲ୍ଲୀଗୁଡ଼ିକ ଦୁଇ ଗୋଟି ସାହାଡ଼ା ବା ଦୁଇ ଧାଡ଼ିରେ ବିଭକ୍ତ ହୋଇଥାଏ । ଯଥା ତଳ ଚମ୍ପେଇ ଓ ଉପର ଚମ୍ପେଇ ପ୍ରଭୃତି ଛାଟି ମାଟିର ନାଁଗୁଲିଆ ଘରେ କବାଟ ବା ଟାଟି ଦେଇ ଘରେ ଦିନତମାମ ଜୁଆଙ୍ଗ ଘରେ ଜଗିବାରେ ଦେଖାଯାଏ । ଜୁଆଙ୍ଗୁଣୀମାନେ ଦଳ ବନ୍ଧ ହୋଇ ଜଙ୍ଗଲରେ ଫଳ ମୂଳ, ଲାଖ, ଟସର ଓ ଝୁଣା ବନ୍ୟଜାତ ପଦାର୍ଥ ସୋରିଷ ରାଶି ଗୁଲୁଚି ପ୍ରଭୃତି ସଂଗ୍ରହ କରି ଜୀବନଧାରଣ କରିଥାଆନ୍ତି । ଗାଁର ମଝିରେ ସେମାନଙ୍କର ଅବସର ବିନୋଦନ କେନ୍ଦ୍ର ମାନାଙ୍ଗ ବା ମଣ୍ଡପର ଅବସ୍ଥିତ ଏହି ମାନାଙ୍ଗ ବିବାହ ପର୍ବପର୍ବାଣୀ ଅତିଥି ଅଭ୍ୟାଗତ ନ୍ୟାୟ ନିଶାପ ସମସ୍ତ କିଛି ଗ୍ରାମର ଦୃଷ୍ଟା ମୁଖର ବିଷୟର ଘଟଣା ହୋଇଥାଏ । ଏହି ମାନାଙ୍ଗରେ ବିରାଟ କାଠଗଡ଼ ସଦାସର୍ବଦା ଜଳା ହୋଇ ରହିଥାଏ । ଜୁଆଙ୍ଗମାନଙ୍କ ଅବିବାହିତ ଯୁବକ ଧାଙ୍ଗଡ଼ା ଓ

ଅବିବାହିତା ଝିଅକୁ ଧାଙ୍ଗିଡ଼ି କୁହାଯାଏ । ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଗ୍ରାମର ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ଏହି ମଣ୍ଡପରେ ଉପସ୍ଥିତ ହୋଇ ଚାଙ୍ଗୁକୁ ସରସ ସୁନ୍ଦର ଛନ୍ଦ ରାଗରାଗେଣୀ ସଙ୍ଗୁ ମାଦଳର ତାଳେ ସଙ୍ଗେ ଦଳବଦ୍ଧ ହୋଇ ନୃତ୍ୟ କରିଥାଆନ୍ତି । ଜୁଆଙ୍ଗ ଜାତିର ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ନାଚଗୀତ ମଧ୍ୟରେ ପରସ୍ପର ପ୍ରତି ଆକର୍ଷିତ ହୋଇ ବିବାହ ବନ୍ଧନରେ ଆବଦ୍ଧ ହୋଇଥାଆନ୍ତି । ବର୍ତ୍ତମାନ ଯୁବା ଜୁଆଙ୍ଗମାନେ ସେମାନଙ୍କ ଅନ୍ଧବିଶ୍ୱାସ ଓ ଧର୍ମଧାରଣା ମଧ୍ୟରେ, ସେମାନେ ଲୁଗାକୁ ମାଟିରେ ଗୋଳାଇ ଗେରୁଆ ରଙ୍ଗର ମଇଳା ଲୁଗା ପିନ୍ଧିଥାଆନ୍ତି । କାରଣ, ସେମାନେ ଧଳାଲୁଗା ପିନ୍ଧିଲେ ସେମାନଙ୍କର ପୂର୍ବ ବଂଶଧରମାନଙ୍କର, ପୂର୍ବପୁରୁଷମାନଙ୍କର ଅଭିଶାପ ପଡ଼ିବାର ରୋଗ ଓ ବାଘ ଖାଇଯିବାର ଭୟ ଥାଏ । ଜୁଆଙ୍ଗ ପୁରୁଷ ସ୍ତ୍ରୀ ଏବେ ଶାଢ଼ୀ ପିନ୍ଧି ଶିଖିଲେଣି ଓ ଗୋଜିକାଠି, ନାକମାଛି, ନୋଲକ, କାଚ, ମଲି, ଖାଡ଼ିଆ ଓ ବସଣି ଜୁଆଙ୍ଗୁଣୀର ପ୍ରଧାନ ଆକର୍ଷଣୀୟ ଅଳଙ୍କାର ହୋଇପାରିଛି । ସେମାନଙ୍କ ପର୍ବ ପର୍ବାଣୀ ମଧ୍ୟରେ ମାଘ ପର୍ବ, ଚୈତ ପର୍ବ, ଆସ ନୁଆଖିଆ ଓ ଧାନ ନୁଆଖିଆ ପର୍ବ ପ୍ରଧାନ । ମକର ପର୍ବ ସେମାନଙ୍କର ପୂର୍ବପୁରୁଷମାନଙ୍କର ସ୍ମୃତି ରୂପେ ପାଳିତ ହୋଇଥାଏ । ଏହି ଦିନ ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ନଦୀରେ ସ୍ନାନ କରିଥାଆନ୍ତି । ସେମାନେ ସଲପରସକୁ ପାନୀୟ ରୂପେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି । ଏହା ନିଶା ରୂପେ ବ୍ୟବହାର କରାଯାଏ ।

କେନ୍ଦୁଝର ଜିଲ୍ଲାରେ ସାଧାରଣତଃ ଏହି ଜୁଆଙ୍ଗମାନେ ଦେଖା ଯାଆନ୍ତି । ଏମାନଙ୍କ ସଂଖ୍ୟା ୧୨,୨୧୪ ଏମାନେ ଜିଲ୍ଲାର ୯ ଗୋଟି ଜୁଆଙ୍ଗ ପିଢ଼ରେ ୨୨୪ଟି ଗ୍ରାମରେ ବସତି ସ୍ଥାପନ କରିଛନ୍ତି । ଏମାନଙ୍କ ସଂଖ୍ୟା ହ୍ରାସ ଘଟିବାରୁ ସରକାର ଜୁଆଙ୍ଗ ଉନ୍ନୟନ ସଂସ୍ଥା ନାମରେ ଏକ ସଂସ୍ଥା ୨୦ ଗୋଟି ଗ୍ରାମରେ ପ୍ରଚଳନ କରାଯାଇ ସେମାନଙ୍କ ଉନ୍ନତି ବିଧାନ ସକାଶେ କାର୍ଯ୍ୟ କରୁଅଛି । ଏହାଦ୍ୱାରା ଆଧୁନିକୀକରଣ କୃଷିକାର୍ଯ୍ୟ ଓ ସ୍ୱାସ୍ଥ୍ୟର ଯତ୍ନ ଶିକ୍ଷାର ଉନ୍ନତି ସକାଶେ ସହାୟତା ଦେଇପାରିଛି । ବର୍ତ୍ତମାନ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ ଆଦିବାସୀ ଓ ହରିଜନ କଲ୍ୟାଣ ବିଭାଗକୁ ସ୍ୱତନ୍ତ୍ର ବିଭାଗ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି, ଫଳରେ ଆଦିବାସୀମାନଙ୍କର ଆହୁରି ଅଧିକ ସୁବିଧା ବ୍ୟବସ୍ଥା ହୋଇପାରିବ ବୋଲି ଆଶା ।

ସମ୍ପାଦକ, ମିଳନୀ ବନ ବୀଥୀ ଓ
ସମ୍ପାଦକ, ଜୀବନ ସାହିତ୍ୟ ମଞ୍ଚ,
କେନ୍ଦୁଝର ।



ସୂଚନା ଭବନଠାରେ ବିଶ୍ୱ ଓଡ଼ିଆ ସମ୍ମିଳନୀ ଉପଲକ୍ଷେ ଅନୁଷ୍ଠିତ ଏକ ବୈଠକରେ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ସଭାପତିତ୍ୱ କରୁଛନ୍ତି । ଏହି ବୈଠକରେ ପରିବହନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା, ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଯୋଗଦାନ କରିଛନ୍ତି (ଚି/ଟି) ।

# ଯେଉଁଠି ଗାଁ ଲୋକେ ସଂସ୍କୃତ ଭାଷାରେ କଥା ହୁଅନ୍ତି

● ଡକ୍ଟର ସଦାନନ୍ଦ ଦୀକ୍ଷିତ

ଯେଉଁ ସଂସ୍କୃତ ଭାଷା ଦିନେ ଲୋକ ଭାଷାରେ ମହାଭାରତ ଭୂଖଣ୍ଡକୁ ଆଧ୍ୟାତ୍ମିକ ଚେତନା ଓ ଊର୍ଦ୍ଧ୍ୱଗାମୀ ଜୀବନ ଦର୍ଶନରେ ପ୍ଲାବିତ କରିଥିଲା ତାହାର ବାସ୍ତବ ସ୍ୱରୂପ ଆଜି ଏକ ବିସ୍ମୟର ବିଷୟ ହୋଇଛି । ପଣ୍ଡିତ ମଣ୍ଡନ ମିଶ୍ରଙ୍କ ଗୃହ ସମ୍ମୁଖରେ ପାଳିତ କୀରାଙ୍ଗନାଗଣ ସଂସ୍କୃତରେ ଦର୍ଶନ ଚର୍ଚ୍ଚା ମାଧ୍ୟମରେ ଆଦି ଶଙ୍କରାଚାର୍ଯ୍ୟଙ୍କର ମାର୍ଗ ନିର୍ଦ୍ଦେଶ କରିଥିବା ବିଷୟ ଆଜି କିମ୍ବଦନ୍ତୀରେ ପରିଣତ ହୋଇଛି । "ସଂସ୍କୃତ ଏକ ମୃତଭାଷା" ଏହି ଭ୍ରମ ଧାରଣାଟି ଏପରି ଦୃଢ ମୂଳ ଯେ ସଂସ୍କୃତ ପ୍ରେମୀ ମନୀଷୀଗଣ ଅନେକ ଆକ୍ଷେପ ଓ ତର୍କର ସମ୍ମୁଖୀନ ହୋଇଛନ୍ତି । ମାତ୍ର ସମସ୍ତ ଅବିଶ୍ୱାସ ଓ ବିସ୍ମୟକୁ ଅତିକ୍ରମ କରି ସଂସ୍କୃତ ଲୋକ ଭାଷା ଭାବରେ ପ୍ରତିଷ୍ଠିତ ହୋଇଛି କର୍ଣ୍ଣାଟକର ଏକ ନିଭୃତପଲ୍ଲୀ "ମତ୍ତୁରୁ"ରେ ଯାହାର ସମସ୍ତ (୧,୨୦୦) ଗ୍ରାମବାସୀ ମାତୃଭାଷା ଭାବରେ ସଂସ୍କୃତକୁ ବ୍ୟବହାର କରୁଛନ୍ତି ।

ହିମାଚଳ ପ୍ରଦେଶର ଦୁର୍ଗମ ପାର୍ବତ୍ୟ ତହସିଲର ଗିରିବାସୀ "ଚିଡାଲ"ମାନଙ୍କ ପରି ମତ୍ତୁରୁ ଗ୍ରାମବାସୀ ଆଦିମକାଳରୁ ସଂସ୍କୃତରେ କଥାବାର୍ତ୍ତା କରୁନଥିଲେ । ପର୍ତ୍ତୁଗୀଜ ଶାସକମାନେ ଯେପରି ମୋଟୀଡ଼ାମାନର ଅଧିବାସୀମାନଙ୍କୁ ଅନ୍ୟ ଦ୍ୱୀପର ଅଧିବାସୀଙ୍କଠାରୁ ଦୂରେଇ ରଖି ବାଧ୍ୟତାମୂଳକ ଭାବେ ଫରାସୀ ଭାଷା ଶିକ୍ଷା ଦେଇ ନିଜ ମାତୃଭାଷାକୁ ଲୋପ କରି ଦେଇଥିଲେ ସେପରି କୃତ୍ରିମ "ସଂସ୍କୃତ ଗ୍ରାମର କାରଣ ନୁହେଁ । ଏଇ ସାଂସ୍କୃତିକ ମର୍ଯ୍ୟାଦାର ପ୍ରତିଷ୍ଠା ପାଇଁ ଗ୍ରାମବାସୀମାନଙ୍କ ଅଦମ୍ୟ ଉତ୍ସାହ ହିଁ ଦାୟୀ । ତେଣୁ ଏହା ବିଶ୍ୱର ପ୍ରଥମ ସଂସ୍କୃତ ଗ୍ରାମ ଭାବରେ ପରିଚିତ ।

କର୍ଣ୍ଣାଟକର ଶିମୋଗା ଜିଲ୍ଲାରେ ତୁଙ୍ଗାନଦୀ କୂଳରେ ଅବସ୍ଥିତ ୬୦୦ ବର୍ଷର ପୁରୁଣା ଏଇ ଗାଁଟି ଶିମୋଗାଠାରୁ ୨୦ କି.ମି. ଦୂରରେ ଅବସ୍ଥିତ । ପଲ୍ଲୀଟି ଦୁଇଭାଗରେ ବିଭକ୍ତ ଅଗ୍ରହାରମ୍ ଗ୍ରାମରେ ଅଛନ୍ତି ସବୁ ଜାତିର ପରିବାର, ମାତ୍ରଅଗ୍ରହାରମ୍‌ରେ ବାସ କରନ୍ତି ପ୍ରାୟ: ୯୦ଟି ବୈଦିକ ବ୍ରାହ୍ମଣ ପରିବାର । ସେମାନେ 'ନିଷ୍ଠାପର, ବେଦବିତ୍ ଓ ଅଗ୍ନିହୋତ୍ରୀ । ଉପନୟନ ପରେ ସମସ୍ତ ବାଳକ ଛଅ ବର୍ଷ ବେଦ ଅଧ୍ୟୟନ କରନ୍ତି । ନିଜ ପିତାଙ୍କଠାରେ ଅଥବା ଅଗ୍ରହାରମ୍‌ର ପ୍ରମୁଖ ବେଦ ବିଦ୍ୱାନ୍ ଅଶ୍ୱତ୍ଥ ଅବଧାନୀଙ୍କ ନିକଟରେ । ବୈଦିକ ପରମ୍ପରା ଅନୁସାରେ ଶିକ୍ଷିତ, ଅଶିକ୍ଷିତ ସମସ୍ତେ ସନ୍ଧ୍ୟା, ଜପ କରନ୍ତି, ମୁଣ୍ଡନ ମଧ୍ୟ କରନ୍ତି । ଅତି ସରଳ ଓ ଶାନ୍ତ ଜୀବନଯାପନ କରିବା ଏମାନଙ୍କର ଜୀବନ ଧର୍ମ । ସମ୍ପତ୍ତି କହିଲେ–ମାଟି ଘରଦ୍ୱାର, ଅଧ ଏକର/ଏକର ନଡ଼ିଆ ଓ ଗୁଆ ବଗିଚା । ଏକର ପିଛା ଆୟ ପ୍ରାୟ ୨୦ ହଜାର ଟଙ୍କା । ଜୀବନ ଧାରଣ ପାଇଁ ଏହା ଯଥେଷ୍ଟ । ଗାଁରେ ଅଛି ମାତ୍ର ଗୋଟିଏ କଳାଧଳା ଦୂରଦର୍ଶନଟିଏ । ଘରମାନଙ୍କରେ ବୈଭବର ସୂଚନା ନାହିଁ, ମାତ୍ର ସର୍ବତ୍ର ପରିଷ୍କାର ଓ ପ୍ରଶାନ୍ତି ଏବଂ ସମସ୍ତଙ୍କ ମୁଖରେ ପ୍ରଫୁଲ୍ଲତା । ଏହିପରି ନୁହେଁ ଯେ ଗାଁରେ ସଭ୍ୟତା ଓ ଶିକ୍ଷାର ପ୍ରବେଶ ନାହିଁ । ଗାଁର ଅଧିକାଂଶ ଯୁବକ, ଯୁବତୀ ଓ ଗୃହିଣୀ ସ୍ନାତକ ଉତ୍ତୀର୍ଣ୍ଣ, ବ୍ୟାଙ୍କ, ମହାବିଦ୍ୟାଳୟ ଓ ବିଦ୍ୟାଳୟମାନଙ୍କରେ କର୍ମରତ । ଏହି ଗ୍ରାମର ଡକ୍ଟର ମତ୍ତୁରୁ କୃଷ୍ଣମୂର୍ତ୍ତି ଭାରତୀୟ ବିଦ୍ୟାଭବନର ଲଣ୍ଡନ କେନ୍ଦ୍ରର ସମ୍ପାଦକ ଭାବେ ବେଶ୍ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ମତ୍ତୁରୁ ଗାଁରୁ ଗାଁକୁ ପଶିଗଲେ ଯେକୌଣସି ନବାଗତ ବ୍ୟକ୍ତିର ଅଭିବାଦନ–ହରି ଓଁ, ସ୍ୱାଗତମ୍'ଠାରୁ ପୁଣି ବିଦାୟ ବେଳାର ସେଇ ସଂସ୍କୃତ–ଅମୃତବୋଳା ଅଭିବ୍ୟକ୍ତି–ଶିବାସ୍ତେ ସନ୍ତୁ ପନ୍ଥାନଃ । ଶିବମସ୍ତୁ! ପୁନର୍ଦର୍ଶନୀୟ, ଇତ୍ୟାଦି ଶୁଣି କେହି ବିଶ୍ୱାସ କରିପାରିବ ନାହିଁ ଯେ ମାତ୍ର ନଅ ବର୍ଷ ପୂର୍ବରୁ ଗ୍ରାମବାସୀମାନେ ସଂସ୍କୃତରେ କଥାବାର୍ତ୍ତା ଜାଣି ନଥିଲେ । ଏମାନଙ୍କର ମାତୃଭାଷା ଥିଲା–ସାଙ୍କେତୀ । ଏହା ଏକ ଦ୍ରାବିଡ଼ ମୂଳ ସଂସ୍କୃତ ଶବ୍ଦ ବହୁଳ ଭାଷା । ଦାକ୍ଷିଣାତ୍ୟର ହବ୍ୟକ ବ୍ରାହ୍ମଣମାନେ ବହୁଳ ଭାବେ ଏହି ଭାଷାକୁ ବ୍ୟବହାର କରନ୍ତି ।

୧୯୮୨ ମସିହା ଅପ୍ରେଲ ମାସରେ ଏକ ସଂସ୍କୃତ ପ୍ରଶିକ୍ଷଣ ଶିବିର ଆୟୋଜନ କରିବାକୁ ଆସେ କେତେ ଜଣ ସଂସ୍କୃତ ପ୍ରସ୍ତାବକ ତୁଙ୍ଗା ନଦୀର ଉତ୍ତର ପାର୍ଶ୍ୱସ୍ଥ "ହୋସହଲ୍ଲୀ" ଗ୍ରାମକୁ ଯାଇଥାନ୍ତି । ସଂସ୍କୃତ ପ୍ରଶିକ୍ଷଣ ପାଇଁ ନଦୀର ଅପର ପାର୍ଶ୍ୱସ୍ଥ ମତ୍ତୁରୁ ଗ୍ରାମରୁ ଦୁଇଜଣ ଉତ୍ସାହୀ ଯୁବକ ଆସିଥାନ୍ତି । ସେମାନଙ୍କ ନିମନ୍ତ୍ରଣ କ୍ରମେ ମତ୍ତୁରୁ ଗ୍ରାମରେ ମଧ୍ୟ ଆରମ୍ଭ ହେଲା ଏକ ସଂସ୍କୃତ ସମ୍ଭାଷଣ ଶିବିର–ସଂସ୍କୃତକୁ ଜୀବନ୍ତ ଏବଂ ବ୍ୟବହାର ଉପଯୋଗୀ କରିବାର ଏକ ଅଭିନବ କାର୍ଯ୍ୟକ୍ରମ । ସଂସ୍କୃତ ସମ୍ଭାଷଣ ଶିବିରରେ ଭାଗ ଗ୍ରହଣ କରି ମାତ୍ର ଦଶ ଦିନ ମଧ୍ୟରେ ଅଧିକାଂଶ ଯୁବକ ଯୁବତୀ ଶୁଦ୍ଧ ସଂସ୍କୃତରେ କଥାବାର୍ତ୍ତା କରିପାରି ଥିବାରୁ ଗ୍ରାମର ପ୍ରମୁଖ ଲୋକମାନେ ଅତ୍ୟନ୍ତ ପ୍ରଭାବିତ ହେଲେ ଏବଂ ସମ୍ପୂର୍ଣ୍ଣ ଗ୍ରାମକୁ "ସଂସ୍କୃତ ଗ୍ରାମରେ ପରିଣତ କରିବାକୁ ସହଯୋଗ କାମନା କଲେ ।

ତା'ପରେ ଆରମ୍ଭ ହେଲା – ଗ୍ରାମବାସୀଙ୍କ ସଂସ୍କୃତିକରଣ ପ୍ରକ୍ରିୟା । ସଂସ୍କୃତ ଭାଷା ଶିକ୍ଷାର ମୌଳିକ ପଦ୍ଧତିକୁ ଆଧାର କରି ୫ ବର୍ଷରୁ ଊର୍ଦ୍ଧ୍ୱ ସମସ୍ତ ଗ୍ରାମବାସୀମାନଙ୍କୁ ବୟସ–ଶିକ୍ଷାଗତ ଯୋଗ୍ୟତା ପରିପାର୍ଶ୍ୱିକ ଅବସ୍ଥା ଭେଦରେ ପ୍ରଥମ ପର୍ଯ୍ୟାୟ ସଂସ୍କୃତ ସମ୍ଭାଷଣ

ଶିକ୍ଷା ଦିଆଗଲା । ସକାଳଠାରୁ ରାତି ପର୍ଯ୍ୟନ୍ତ ; ସକାଳେ ଯୁବକ ଯୁବତୀମାନଙ୍କୁ ମଧ୍ୟାହ୍ନରେ ଗୃହିଣୀମାନଙ୍କୁ, ଅପରାହ୍ନରେ ପାଠପଢ଼ିଆରେ ଶିଶୁ ଓ କିଶୋରମାନଙ୍କୁ ଏବଂ ରାତିରେ ବୃଦ୍ଧ ବୃଦ୍ଧାମାନଙ୍କୁ । ସଂସ୍କୃତକୁ ନିଜର କରି ନେବାକୁ ସମସ୍ତଙ୍କର ଉତ୍କଟ ଇଚ୍ଛା ହିଁ ପ୍ରଶିକ୍ଷକମାନଙ୍କ ମନରେ ବିଶ୍ୱାସ ଦୃଢ଼ୀଭୂତ କଲା । ଘରର ଉପକରଣଗୁଡ଼ିକରେ ସଂସ୍କୃତ ନାମଟିକୁ ଲେଖି ଅଠାରେ ଶୀର୍ଷକ ଲଗାଇ ଦିଆଗଲା । ଏମିତି କାଗଜ ଖଣ୍ଡଗୁଡ଼ିକୁ କାଟି, ଲେଖି ଅଠା ଲଗାଇବାକୁ ଗ୍ରାମର ସମସ୍ତ ଯୁବକ ଯୁବତୀ ଆଗେଇ ଆସିଲେ । ସେମାନଙ୍କ ଉତ୍ସାହ ଏକ ଗଣ ଉଦ୍ଦୀପନାରେ ପରିଣତ ହେଲା । ବସ୍ତୁରେ ଲେଖାଗଲା:– ଚଷକମ୍, ଗ୍ଲାସରେ – ଚମସମ୍, ଫ୍ୟାନ୍ – ବ୍ୟଜନମ୍, ଚେୟାର – ଆସନ୍ଦଃ, ରୋଷେଇ ଘର – ପାକଶାଳା ଇତ୍ୟାଦି । ପ୍ରତ୍ୟେକ ଘରର ମୁଖ୍ୟ ଦ୍ୱାରରେ ଲେଖାଗଲା – "ସଂସ୍କୃତ ଗୃହମ୍ । କୃପୟା ଭବାନ୍ ସଂସ୍କୃତେନ ବ୍ୟବହାରଂ କରୋତୁ ।"

ତା'ପରେ ଆରମ୍ଭ ହେଲା – ସଂସ୍କୃତ ସମ୍ଭାଷଣ ଶିକ୍ଷା ପ୍ରତି ଘରକୁ ଘର ବୁଲି ଓ ପୂର୍ବ ପ୍ରଶିକ୍ଷିତ ଗ୍ରାମ୍ୟ ଯୁବକ ଯୁବତୀ ସଂସ୍କୃତ ସମ୍ଭାଷଣର ବିଭିନ୍ନ ସମସ୍ୟା ଏବଂ ଦୋଷତ୍ରୁଟିର ସମାଧାନ କରିବାକୁ ଲାଗିଲେ । ନିତ୍ୟ ବ୍ୟବହାର ଯୋଗ୍ୟ ବାକ୍ୟାବଳୀର ଚାର୍ଟ ତିଆରି କରି ଘରମାନଙ୍କରେ ଟାଙ୍ଗି ଦିଆଗଲା – ହରି ଓଁ, ନମୋଃ ନମୋଃ । ଆଗଚ୍ଛତୁ ଉପବିଶତୁ । କୁତ୍ର ଗଚ୍ଛତି ? ନାହିଁ ଜାନାମି – ଇତ୍ୟାଦି ବ୍ୟବହାରରେ ସଂସ୍କୃତ ଭାଷା ଧୀରେ ଧୀରେ ଗ୍ରାମବାସୀଙ୍କୁ ଉତ୍‌ଫୁଲ୍ଲିତ କଲା । ଛୋଟ ଶିଶୁଟି ମଧ୍ୟ ତା'ର ଜୀବନର ପ୍ରଥମ ଶିକ୍ଷା ଆରମ୍ଭ କଲା ସଂସ୍କୃତରେ "ମାତା –ପିତା । ମମ ମାତା ଦେବତା ।।"

ସଂସ୍କୃତରେ ପ୍ରବେଶ ଓ ଗତିଶୀଳତା ପାଇଁ ପ୍ରାୟ ଆଠମାସ ସମୟ ଲାଗିଲା । ୧୯୮୩ ଜାନୁୟାରୀ ୧୪ ତାରିଖ ମକର ସଂକ୍ରାନ୍ତିର ପୁଣ୍ୟ ତିଥିରେ ଏକ ମହୋତ୍ସବରେ ଉଡୁପିର ପେଜବାର ମଠାଧୀଶ ପରମ ପୂଜନୀୟ ବିଶ୍ୱେଶତୀର୍ଥ ସ୍ୱାମୀଜୀ ବିଧିବଦ୍ଧ ଭାବରେ "ମତ୍ତୁର"କୁ "ସଂସ୍କୃତ ଗ୍ରାମ" ବୋଲି ଘୋଷଣା କଲେ ।

ଏଇଠି ଶେଷ ହେଲା ନାହିଁ ସଂସ୍କୃତକୁ ନବଜୀବନ ଦେବାର ଅଭିନବ ପ୍ରୟାସ । ଉଦ୍ୟୋକ୍ତାମାନଙ୍କ ଆଶଙ୍କା ଥିଲା ଏକ ଅସ୍ୱାଭାବିକ ମାତୃଭାଷାକୁ ଅନ୍ୟଭାଷା କବଳରୁ ମୁକ୍ତ ନକଲେ ସଂସ୍କୃତରେ ମାତୃଭାଷାତ୍ୱ ବେଶୀ ଦିନ ବଞ୍ଚି ପାରିବ ନାହିଁ । ଏଣୁ ସେହି ଗ୍ରାମରେ ଆରମ୍ଭ କରାଗଲା – ସଂସ୍କୃତ ସମ୍ଭାଷଣ କେନ୍ଦ୍ର । କେନ୍ଦ୍ରର ସଞ୍ଚାଳିକା କୁମାରୀ ଶାଳିନୀ କହନ୍ତି, ଏହି କେନ୍ଦ୍ରରେ ସଂସ୍କୃତରେ ଅନୁବାଦ କରିବା ଓ ଭାଷା ବ୍ୟବହାରର ବିବିଧ ପ୍ରୟୋଗକୁ ସଂସ୍କୃତ କ୍ଷେତ୍ରରେ ଉପଯୋଗ କରିବା ନିମିତ୍ତ ବିଧିବଦ୍ଧ ଉଦ୍ୟମ କରାଯାଉଛି । ଏଣୁ ଆବାଳ ବୃଦ୍ଧ ବନିତା ସ୍ୱାଭାବିକ ଭାବେ ମାତୃଭାଷା ଭଳି ସଂସ୍କୃତରେ ନିରର୍ଗଳ ସମସ୍ତ ଭାବକୁ ପ୍ରକାଶ କରିବାରେ ସମର୍ଥ ।

ପାକଶାଳାରୁ ଯଜ୍ଞଶାଳା ଏବଂ କ୍ରୀଡ଼ାଙ୍ଗନରୁ ଗୃହାଙ୍ଗନ ପର୍ଯ୍ୟନ୍ତ ସର୍ବତ୍ର କେବଳ ସରଳ ବୋଧ ଗମ୍ୟ ସଂସ୍କୃତର ଝଙ୍କାର ତୋଳୁଥିବା ଏହି କ୍ଷୁଦ୍ର ପଲ୍ଲୀଟି ଆଜି ବିଶ୍ୱର ସଂସ୍କୃତାନୁରାଗୀମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ଭାଷାବିତ୍‌ମାନଙ୍କ ସମସ୍ତ ଆଶଙ୍କାକୁ ଦୂରୀଭୂତ କରି ଏହା ପ୍ରମାଣିତ କରି ଦେଇଛି ଯେ ସଂସ୍କୃତ ଭାରତର ଲୋକଭାଷା ଥିଲା ।

*ମହାଶକ୍ତିକ୍ଷେତ୍ର ଲୋକଭାଷା ପ୍ରଚାର ସମିତି, ପୁରୀ–୭୫୨୦୦୧ ।*



ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରଠାରେ ଅନୁଷ୍ଠିତ ପୁରସ୍କାରପ୍ରାପ୍ତ ଗବେଷକମାନଙ୍କ କଳାକୃତି ପ୍ରଦର୍ଶନୀକୁ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ ଉଦ୍‌ଘାଟନ କରୁଛନ୍ତି (୭/୮) ।

# ଭାଷା ଅନେକ, ଦେଶ ଗୋଟିଏ

● ଶ୍ରୀମତୀ ବିଜୟା ମହାପାତ୍ର

ଆମ ଦେଶର ନାମ ଭାରତବର୍ଷ । ଏହି ଦେଶରେ ଅନେକ ଭାଷାଭାଷୀର ଲୋକ ଅଛନ୍ତି । ଏହି ଭାରତବର୍ଷର ପ୍ରତ୍ୟେକ ପ୍ରଦେଶର ଭାଷା ଅଲଗା ଅଲଗା । ଓଡ଼ିଶାର ଭାଷା ଓଡ଼ିଆ, ଆସାମର ଭାଷା ଆସାମୀ, ବଙ୍ଗର ଭାଷା ବଙ୍ଗଳା, ଆନ୍ଧ୍ର ପ୍ରଦେଶର ଭାଷା ତେଲୁଗୁ, ତାମିଲ୍‌ନାଡୁର ଭାଷା ତାମିଲ୍, ମହାରାଷ୍ଟ୍ରର ଭାଷା ମରାଠି, ଗୁଜୁରାଟର ଭାଷା ଗୁଜୁରାଟୀ । ସେହିପରି ଅନ୍ୟ ପ୍ରଦେଶଗୁଡ଼ିକର ଭାଷା ଭିନ୍ନ ଭିନ୍ନ । ଆମ ଦେଶରେ ଏହିପରି ୧୯ ପ୍ରକାରର ଭାଷା ଅଛି । ଖାଲି ସେତିକି ନୁହେଁ । ପ୍ରତ୍ୟେକ ପ୍ରଦେଶରେ ମଧ୍ୟ ବିଭିନ୍ନ ଭାଷାର ଲୋକମାନେ ଅଛନ୍ତି । ଯେପରି କୋରାପୁଟର ଆଦିବାସୀଙ୍କ ପାଇଁ କେତେକ ଭାଷା ଅଛି, ସେହିପରି ଅନ୍ୟ କେତେଜାତିର ଲୋକଙ୍କ ପାଇଁ ମଧ୍ୟ ଅଲଗା ଅଲଗା ଭାଷା ରହିଛି ।

କୌଣସି ହାଟ ବା ମେଳା ବୁଲିଗଲାବେଳେ ସେଠାରେ କେତେପ୍ରକାର ବେଶ ଭୂଷାର ଲୋକ ଦେଖିବାକୁ ମିଳିଥାଏ । ସେମାନେ ସବୁ ବିଭିନ୍ନ ଭାଷାରେ କଥାବାର୍ତ୍ତା ହୁଅନ୍ତି । ଯିଏ ଯାହାର ଭାଷା ନିଜନିଜ ଲୋକଙ୍କ ମଧ୍ୟରେ କଥାବାର୍ତ୍ତା ହୋଇଥାଆନ୍ତି । ଯଦିଓ ସବୁଭାଷା ଆମେ ବୁଝିପାରୁନାହିଁ ତଥାପି କେତେକ ଶବ୍ଦ ବୁଝିଗଲା ଭଳି ଲାଗେ । ସେମାନଙ୍କ ବ୍ୟବହାର ଚାଲିଚଳନ ଅଲଗା ଅଲଗା ହୋଇଥାଏ । ସେମାନେ ତାଙ୍କର ନିଜନିଜର ରୁଚି ଅନୁସାରେ ଖାଇବା, ପିଇବା, ନାଚିବା, ଗାଇବା, ପ୍ରଭୃତି କରିଥାନ୍ତି । ହାଟ ବା ମେଳାରେ ଅଲଗା ଅଲଗା ଭାଷାର ଲୋକମାନେ କଥାବାର୍ତ୍ତା ହେଉଥିଲେ ମଧ୍ୟ ଦୂରକୁ ସେହି ସମସ୍ତ ଭାଷା ଗୋଟିଏ ସ୍ୱର ଭଳି ଶୁଣାଯାଏ । ଠିକ୍ ସେହିପରି ଆମଦେଶରେ ବିଭିନ୍ନ ଭାଷାର ଲୋକମାନେ ରହିଥିଲେ ମଧ୍ୟ ସେମାନେ ସମସ୍ତେ କହନ୍ତି "ଆମେ ଭାରତବାସୀ" । ସେମାନେ ସମସ୍ତେ ବିଭିନ୍ନ ଜାତି ଧର୍ମର ଲୋକ ହୋଇ ସୁଦ୍ଧା ଭାରତରେ ମିଳିମିଶି, ଭାଇକୁ ଭାଇ ମିଶାଇ ସୁଖଦୁଃଖରେ ଚଳନ୍ତି ।

ଆମ ଭାରତର ସାହିତ୍ୟ, କଳା, ସଂସ୍କୃତ ପର୍ବପର୍ବାଣି ସେହି ସମସ୍ତ ଭାଷାକୁ ନେଇ ଗଢ଼ିଉଠିଛି । ଓଡ଼ିଶାଲୋକଙ୍କ ପର୍ବପର୍ବାଣି ମାଲାୟାଲାମ୍ ଲୋକଙ୍କଠାରୁ ଭିନ୍ନ । କିଏ ଜଗନ୍ନାଥଙ୍କର ଭକ୍ତ ତ ଅନ୍ୟଜଣେ ଆୟାପ୍ପାଙ୍କର ଭକ୍ତ । ତଥାପି ସମସ୍ତଙ୍କ ଲକ୍ଷ୍ୟ ଏକ । ସେହି ସମସ୍ତ ପର୍ବପର୍ବାଣି ଭିନ୍ନ ଧରଣର ହୋଇଥିଲେ ମଧ୍ୟ ଉଦ୍ଦେଶ୍ୟ ପ୍ରାୟ ସମାନ ହୋଇଥାଏ । ସମସ୍ତେ ଆନନ୍ଦଉତ୍ସବ ମଧ୍ୟରେ ତାହାପାଳନ କରିଥାନ୍ତି । ସେହିପରି ଭିନ୍ନ ଭାଷାଭାଷୀ ବା ପ୍ରଦେଶର ଲୋକମାନେ ନିଜନିଜର ଦିଅଁଙ୍କୁ ପୂଜା କରୁଥିଲେ ମଧ୍ୟ ସମସ୍ତଙ୍କର ଆରାଧ୍ୟ ଦେବତା ଏକା ସେହି ଈଶ୍ୱର । ପ୍ରତ୍ୟେକ ଦିଅଁ ଦେବତା ଈଶ୍ୱରଙ୍କର ଭିନ୍ନଭିନ୍ନ ରୂପମାତ୍ର । ସେହିପରି ବିଭିନ୍ନ ଭାଷା ମଧ୍ୟରେ ସାମଞ୍ଜସ୍ୟ ଥିବାର ଦେଖିବାକୁ ମିଳିଥାଏ । ଯେପରି ବଙ୍ଗଳା ସହିତ ଆସାମୀ ଭାଷାର ଓ ବଙ୍ଗ, ଆସାମୀ ସହିତ ଓଡ଼ିଆ ଭାଷାର ସାମଞ୍ଜସ୍ୟ ରହିଛି । ସେହିପରି କେତେକାଂଶରେ ତେଲୁଗୁ ଭାଷା ସହିତ ତାମିଲ୍ ଭାଷା ଓ ତାମିଲ୍ ଭାଷା ସହିତ ମାଲାୟାଲାମ୍‌ର ସମ୍ପର୍କ ରହିଥାଏ । ହିନ୍ଦୀ ସହିତ ପଞ୍ଜାବୀ ଓ ମରାଠି ଭାଷାର ସାମଞ୍ଜସ୍ୟ ଦେଖିବାକୁ ମିଳିଥାଏ । ଏହିପରି କେତେକ ଭାଷାଭାଷୀ ଲୋକଙ୍କ ମଧ୍ୟରେ ତାଙ୍କର ସଂସ୍କୃତି ପରମ୍ପରାର ସମାନତା ଦେଖିବାକୁ ମିଳିଥାଏ । ଯେପରି ଓଡ଼ିଆମାନଙ୍କ ପୂଜାପର୍ବ, ଉପାସନା ସହିତ ବଙ୍ଗାଳୀମାନଙ୍କ ପୂଜାପର୍ବ, ଉପାସନାରେ ସମାନତା ରହିଥାଏ। ଗୁଜୁରାଟୀ ମାନଙ୍କ ନୀତିନିୟମ, ଚାଲିଚଳନ ସହିତ ମରାଠୀ ଲୋକଙ୍କର ଆଗ୍ରର ବ୍ୟବହାର ଓ ସଂସ୍କୃତିର ମେଳ ରହିଥିବାର ଦେଖାଯାଏ । ବିଭିନ୍ନ ଭାଷାର ଲୋକମାନଙ୍କ ମଧ୍ୟରେ ବିବାହ ଓ ବନ୍ଧୁତା ସ୍ଥାପନ ହେଉଛି । ଏହାଦ୍ୱାରା ଦେଶରେ ଜାତୀୟତା ଓ ଏକତା ବଢ଼ିବାରେ ସାହାଯ୍ୟ କରୁଛି । ଭିନ୍ନ ଭିନ୍ନ ଭାଷାର ଲୋକଙ୍କ ମଧ୍ୟରେ ଚିଠିପତ୍ର ଦେବାନେବା ହେତୁ ବନ୍ଧୁତା ସୃଷ୍ଟି ହୋଇପାରୁଛି ।

ଆମେ ସମସ୍ତେ ଭାରତମାତାର ସନ୍ତାନ । ତାହାରି କୋଳରେ ଆମେ ବଢ଼ିଛୁ । ଏକ ପାଣି, ପବନ ଓ ଆକାଶତଳେ ଆମେ ଜୀବନ ଧାରଣ କରୁଛୁ । ଯଦିବା ଆମର ଭାଷା ଭିନ୍ନ ଭିନ୍ନ ମାତ୍ର ଆମର ଲକ୍ଷ୍ୟ ଗୋଟିଏ । ଆମେ ସମସ୍ତେ ଦେଶର ଉନ୍ନତି ଚାହୁଁ । ଦେଶର ଉନ୍ନତିରେ ଆମର ଉନ୍ନତି । ଏଥିପାଇଁ ଅନେକ ବାଧାବିଘ୍ନ ଆସିଥାଏ, ମାତ୍ର ସେଗୁଡ଼ିକୁ ଆମେ ଆଦୌ ଖାତିର ନକରି ଭାରତମାତାର ସେବାରେ ଲାଗିପଡ଼ିଥାଉଁ । ଆମେ ଭାରତର ବିକାଶ ପାଇଁ ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଉ । ଭାରତକୁ ସ୍ୱାଧୀନ କରିବା ପାଇଁ କେବଳ ଗୋଟିଏ ଭାଷା ବା ପ୍ରଦେଶର ଲୋକମାନେ ଯେ ଲଢ଼ିଥିଲେ ତା'ନୁହେଁ, ସମସ୍ତ ଭାରତ ବର୍ଷର ବିଭିନ୍ନ ପ୍ରଦେଶର ବିଭିନ୍ନ ଭାଷାଭାଷୀ ଲୋକେ ନିଜ ଜୀବନର ସମସ୍ତ ସୁଖ, ଶାନ୍ତିକୁ ତୁଚ୍ଛକରି ଜୀବନଦେଇ ଇଂରେଜ ସରକାରଙ୍କଠାରୁ ଆମ ଦେଶକୁ ସ୍ୱାଧୀନ କରିଥିଲେ ।

ଏକତାହିଁ ବଳ ଯେଉଁ ଜାତି ମଧ୍ୟରେ ଯେତେ ବେଶୀ ଏକତା ଭାବ ରହିଛି, ସେହିଜାତି ସେତେ ଆଗୁଆ ହୋଇ ରହିଛି । ଦେଶର ଏକତା ପାଇଁ ଆମେ ନିଜନିଜ ମଧ୍ୟରେ ଥିବା ସମସ୍ତ ପାର୍ଥକ୍ୟକୁ ଭୁଲିଯାଇଥାଉଁ । ଆମର ଭାଷା ଭିନ୍ନଭିନ୍ନ ହେଲେ ସୁଦ୍ଧା ଆମେ ସମସ୍ତେ ଭାରତୀୟ । ତେଣୁ ଆମେ ସମସ୍ତେ ସବୁବେଳେ ଜାତୀୟ

ଏକତା ପାଇଁ କାର୍ଯ୍ୟ କରିଥାଉଁ । ଭିନ୍ନତା ମଧ୍ୟରେ ଏକତାର ସୃଷ୍ଟି କରିଥାଏ । ଏହାଫଳରେ ଆମ ମଧ୍ୟରେ ରହିଥିବା ନୀଚଭାବ ଦୂର ହୁଏ । ଅନେକ ସମୟରେ ଏପରି ହୁଏ ଯେ, ଆମ ପାଖ ସାଇପଡ଼ିଶା ଅନ୍ୟ ଭାଷାର ଲୋକ ହୋଇଥିଲେ ତାଙ୍କଭାଷା ଯେହେତୁ ଆମେ ପ୍ରଥମେ ବୁଝିପାରିନଥାଉଁ, ତେଣୁ ସେମାନଙ୍କୁ ଭଲ ଲାଗିନଥାଏ, ତାଙ୍କ ଭାଷା ମଧ୍ୟ ଭଲଲାଗେନି । କିନ୍ତୁ ପ୍ରକୃତରେ ଏପରି ଭାବିବା ବା ମନରୁ ଏପରି ଧାରଣା ଆଣିବା ଠିକ୍ ନୁହେଁ । ପ୍ରତ୍ୟେକଙ୍କର ମାତୃଭାଷା ପ୍ରତ୍ୟେକଙ୍କୁ ଭଲଲାଗିଥାଏ ତେଣୁ କୌଣସି ଭାଷାକୁ ହୀନ ବା ଘୃଣା ଦୃଷ୍ଟିରେ ଦେଖିବା ଉଚିତ୍ ନୁହେଁ । ଆଜିକାଲି ଆଧୁନିକ ଯୁଗରେ କେତେକ ଲୋକ ନିଜ ନିଜର ମାତୃଭାଷାକୁ ମଧ୍ୟ ଅବହେଳିବାକୁ ବସିଲେଣି । କେତେକ ଭାବନ୍ତି ମାତୃଭାଷା ବଦଳରେ ଇଂରାଜୀ ଭାଷା କହିପାରିଲେ, ଲେଖିପାରିଲେ ସେ ଗୁରୁତ୍ୱ । ତେଣୁ ସେମାନେ ଘରେ ଇଂରାଜୀ ଭାଷାରେ କଥାବାର୍ତ୍ତା କହିବା ପାଇଁ ପସନ୍ଦ କରନ୍ତି । ପିଲାଙ୍କର 'ଡାଡି' ଓ 'ମାମି' ଡାକ ଶୁଣିବାକୁ ବେଶୀ ଭଲ ଲାଗେ । ସେମାନେ ନିଜ ମାତୃଭାଷାକୁ ଅବହେଳା କରିବା ସଙ୍ଗେ ସଙ୍ଗେ ଅନ୍ୟଭାଷାକୁ ତୁଚ୍ଛ ମନେକରନ୍ତି । ମାତ୍ର ଆଜିକାଲି ପ୍ରାୟ ପ୍ରତ୍ୟେକ ପ୍ରଦେଶରେ ନିଜ ନିଜର ମାତୃଭାଷା ମାଧ୍ୟମରେ ଶିକ୍ଷା ଦାନ କରାଗଲାଣି ଓ ସେହି ମାତୃଭାଷାରେ ସମସ୍ତ ସରକାରୀ କାର୍ଯ୍ୟକ୍ରମ ହେଲାଣି । ଗୋଟିଏ ଜାତି କେବଳ ତା'ର ମାତୃଭାଷାର ବିକାଶ ଓ ସାହିତ୍ୟର ଉନ୍ନତି ପାଇଁ ଗର୍ବ ମନେ କରିଥାଏ । ଯେଉଁ ଭାଷା ଯେତେ ଉନ୍ନତ ସେ ଜାତି ମଧ୍ୟ ସେତେ ଉନ୍ନତ । ତେଣୁ କବି ଗଙ୍ଗାଧର ମେହେର କହିଛନ୍ତି—

"ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗ ନିଜ ମାତୃଭାଷା ।"

ସେ ପୁଣି କହିଛନ୍ତି—

ମାତୃଭୂମି ମାତୃଭାଷାରେ ମମତା ଯା'ହୃଦେ ଜନମି ନାହିଁ,
ତାକୁ ଯେବେ ଜ୍ଞାନୀପଣରେ ଗଣିବା ଅଜ୍ଞାନ ରହିବେ ନାହିଁ ।

ତେଣୁ ଆମେ ସମସ୍ତେ ନିଜ ନିଜର ମାତୃଭାଷାକୁ ଭଲ ପାଇବା ଦରକାର ଓ ଅନ୍ୟଭାଷାକୁ ଘୃଣା କରିବା ଠିକ୍ ନୁହେଁ । ନିଜେ ଚେଷ୍ଟାକରି ଅନ୍ୟଭାଷାକୁ ଶିଖି ପାରିଲେ ଭଲ । ଆମଦେଶର ଅନେକଲୋକ ଅଛନ୍ତି ଯେଉଁମାନେ ଏକାଧିକ ଭାଷାଜାଣନ୍ତି । କିନ୍ତୁ ଆମ ଦେଶର ୧୮ଟି ଭାଷା ଜାଣିଥିଲେ । ଆମେ ଯେବେ ଅଧିକ ଭାଷା ଜାଣିବା ଆମକୁ ବିଭିନ୍ନ ଜାଗାରେ ଚଳିବା ପାଇଁ ସେତେ ସୁବିଧା ହେବ । ସାଧାରଣତଃ ଓଡ଼ିଶା ବାହାରକୁ ଗଲେ ବା ଅନ୍ୟ ପ୍ରଦେଶର ଲୋକଙ୍କ ସହ କଥାବାର୍ତ୍ତା ହେବା ସୁବିଧା ହୋଇପାରିବ ଯେତେବେଳେ ଆମେ ସେହି ଅଞ୍ଚଳର ଭାଷା ବୁଝି ପାରିବା ଓ କହି ପାରିବା ।

ଥରେ ଥରେ ଏପରି ବି ହୋଇଥାଏ, ଗୋଟିଏ ଭାଷାର ଲୋକ ଯେତେବେଳେ ନିଜ ଭାଷାର ଲୋକସହ ଅନ୍ୟ ପ୍ରଦେଶରେ ଦେଖାକରେ, ସେ ନିଜଭାଷା ଛାଡ଼ି ଅନ୍ୟଭାଷାରେ କଥାବାର୍ତ୍ତା କରେ । ଏହା ଫଳରେ ନିଜ ମନର କଥା ଠିକ୍‌ଭାବେ ପ୍ରକାଶ କରି ପାରିନଥାଏ । ଜଣେ ଓଡ଼ିଆଲୋକ ବଙ୍ଗଳାରେ ଥିଲେ ସେ ଅନ୍ୟ ଓଡ଼ିଆଲୋକଙ୍କ ସହ ବଙ୍ଗଳାରେ କଥାକହିବାକୁ ପ୍ରାୟତଃ ପସନ୍ଦ କରେ ।

ନିଜ ପାଖ ପଡ଼ିଶା ଯଦି ଅନ୍ୟଭାଷାର ଲୋକ ହୋଇଥାନ୍ତି ତେବେ ତାଙ୍କୁ ହୀନ ଦୃଷ୍ଟିରେ ନଦେଖି ରାଷ୍ଟ୍ରଭାଷା ହିନ୍ଦୀ ମାଧ୍ୟମରେ ପ୍ରଥମେ ତାଙ୍କସହ କଥା ବାର୍ତ୍ତା କରିବା ଭଲ ।

ଏ ସମସ୍ତ କାରଣ ଯୋଗୁଁ ଆମେ ଏକାଧିକ ଭାଷା ଜାଣି ସବୁ ଭାଷାଭାଷୀ ଲୋକଙ୍କ ମଧ୍ୟରେ ରହି ଆବଶ୍ୟକ ବେଳେ ସେହି ସେହି ଭାଷାରେ କଥାବାର୍ତ୍ତା କଲେ ଜାତୀୟ ଏକତା ବଢ଼ିଥାଏ । ଆମ୍ଭେମାନେ ସମସ୍ତେ ଏକ ଭାରତମାତାର ସନ୍ତାନ ହୋଇ ଥିବାରୁ ଭେଦଭାବ ଭୁଲିଯାଇ ନିଜନିଜ ମଧ୍ୟରେ ମିଳିମିଶି ଚଳିବା କର୍ତ୍ତବ୍ୟ ।

ବିଭିନ୍ନ ପ୍ରକାର ଫୁଲମିଶି ଯେପରି ଗୋଟିଏ ମାଳହୁଏ ସେହିପରି ବିଭିନ୍ନ ଭାଷା ଧର୍ମ, ପୋଷାକ ଗ୍ରଳିଚଳନ ଭିନ୍ନଭିନ୍ନ ହେଲେ ସୁଦ୍ଧା ଆମେ ସମସ୍ତେ ଏକ ଭାରତମାତାର ସନ୍ତାନ । ଭିନ୍ନ ବେଶ ଓ ଭିନ୍ନ ଭାଷା ହେଲେହେଁ ଆମେ ସମସ୍ତେ ଗୋଟିଏ ଦେଶର ସନ୍ତାନ ।

---

ମାର୍ଫତ—
ଶ୍ରୀ ମନୁରଞ୍ଜନ ମହାପାତ୍ର,
ବି.ଏ.ଡି କଲେଜ,
କୋରାପୁଟ—୭୬୪୦୨୦ ।




ମାହାଙ୍ଗାଠାରେ ନବ ନିର୍ମିତ ତହସିଲ୍ କାର୍ଯ୍ୟାଳୟର ଗୃହକୁ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ଘାଟନ କରୁଛନ୍ତି (୧୧/୮) ।




**ଶାରଦା ପ୍ରସାଦ ମହାନ୍ତି,
କ୍ବାର୍ଟର ନଂ–ବି/୨୬, ନୁଆ ଏଲ୍: ଆଇ: ସି: କଲୋନୀ,
ବାଦାମବାଡ଼ି, କଟକ–୭୫୩୦୧୨ ।**

*ମହାଶୟ, ଫଟୋଟାଇପ୍‌ସେଟିଂ ପଦ୍ଧତିରେ ପ୍ରକାଶିତ ଉତ୍କଳ ପ୍ରସଙ୍ଗର 'ଉତ୍କଳ ଦିବସ' ବିଶେଷାଙ୍କଟି ଖୁବ୍ ଚମତ୍କାର ଏବଂ ଉପାଦେୟ ହୋଇପାରିଛି । ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ଓଡ଼ିଆ ବରପୁତ୍ରମାନଙ୍କର ସାକ୍ଷାତକାର ପ୍ରତି ସଂଖ୍ୟାରେ ପ୍ରକାଶ କଲେ ଓଡ଼ିଆ ଯୁବ ସମାଜକୁ ପ୍ରେରଣା ଦିଅନ୍ତା ଏବଂ ନୂତନ ଦିଗ୍‌ଦର୍ଶନ ଦିଅନ୍ତା । ଓଡ଼ିଶାର ଇତିହାସ, ସଂସ୍କୃତି, ଚାଲିଚଳଣ ଓ ପର୍ବପର୍ବାଣୀ ଉପରେ ଧାରାବାହିକ ଲେଖା ପ୍ରକାଶିତ ହେଲେ ପତ୍ରିକାଟି ଆହୁରି ଆକର୍ଷଣୀୟ ହୋଇପାରନ୍ତା ।

**ଓଡ଼ିଶାର ବରପୁତ୍ରମାନଙ୍କ ସମ୍ପର୍କରେ ପ୍ରତି ସଂଖ୍ୟାରେ କିଛି କିଛି ରହୁଛି । ଓଡ଼ିଶାର କଳା, ସଂସ୍କୃତି ଓ ପରମ୍ପରା ସମ୍ପର୍କରେ ନଭେମ୍ବର ମାସର ସଂଖ୍ୟାଟି ସ୍ୱତନ୍ତ୍ର ସଂଖ୍ୟା ହେଉଛି ।

**ନରସିଂହ ନନ୍ଦ,
IV-N-40, ୟୁନିଟ୍–୪,
ଭୁବନେଶ୍ୱର–୯, ପୁରୀ ।**

*ଉତ୍କଳ ପ୍ରସଙ୍ଗ ଦୀର୍ଘଦିନ ଏକ ରୁଚିସମ୍ପନ୍ନ ପତ୍ରିକା ଭାବେ ଓଡ଼ିଶାରେ ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବାରେ ଲାଗିଥିଲା । ସାହିତ୍ୟ, ସନ୍ଦର୍ଭ, ସମାଲୋଚନା, ଗଳ୍ପ, କବିତା ଇତ୍ୟାଦିରେ ସମୃଦ୍ଧ ଏହି ପତ୍ରିକା ପୂର୍ବପରି ଏକ ସରକାରୀ ବିବରଣୀ ସର୍ବସ୍ୱ ନହୋଇ ବୁଦ୍ଧିଜୀବୀ, ସାହିତ୍ୟିକମାନଙ୍କ ଦ୍ୱାରା ମଧ୍ୟ ଆଦୃତ ହେଲା । ବର୍ତ୍ତମାନ ଏହି ପତ୍ରିକାରେ ଆଧୁନିକ କବିତା ପ୍ରକାଶ ପାଉନାହିଁ । କବିତା ସାହିତ୍ୟର ଏକ ଉନ୍ନତ ବିଭବ । ଏଣୁ ଉତ୍କଳ ପ୍ରସଙ୍ଗରେ କବିତା ପ୍ରକାଶ ପାଇଁ ବ୍ୟବସ୍ଥା କରାଯାଉ ।

**ବିଭିନ୍ନ ରୁଚିକୁ ନେଇ ଉତ୍କଳ ପ୍ରସଙ୍ଗ ପ୍ରକାଶ ପାଉଥିବା ବେଳେ ଆଧୁନିକ କବିତା ବାଦ ପଡ଼ିବା ପ୍ରଶ୍ନ ଉଠୁନାହିଁ । ନିୟମିତ ଭାବେ ପଢ଼ନ୍ତୁ, କିଛି କିଛି ନିଶ୍ଚୟ ପାଇବେ ।

**ଅଶୋକ କୁମାର ସ୍ୱାଇଁ, ଏମ୍: ଏ:,
(ଇତିହାସ ଅଧ୍ୟାପକ, ବୋରିକିନା)
ଗ୍ରାମ–ତିଗିରିଆ, ପୋଷ୍ଟ–ସଂଗ୍ରାମପୁର,
ଭାୟା–ବାଲିକୁଦା, କଟକ ।**

*ମହାଶୟ, ଉତ୍କଳର ସନ୍ତାନ ହିସାବରେ ଉତ୍କଳ ଜନନୀର ମହିମମୟୀ ତଥା ପୁଣ୍ୟ ଗାଥାକୁ ସୁଯୋଗ୍ୟ ଉତ୍କଳ ସନ୍ତାନମାନଙ୍କ ଅମର ଲେଖନୀର ଅମୃତ ଝରଣାକୁ ଉତ୍କଳ ପ୍ରସଙ୍ଗରୁ ଅଧ୍ୟୟନ କରି ଓ ନେତ୍ର ଯୁଗଳରେ ପାନ କରି ଯେଉଁ ଦିବ୍ୟାନନ୍ଦ ଲାଭ କରୁଛି, ତା'କୁ ବର୍ଣ୍ଣିବାକୁ ଭାଷା ନାହିଁ । ମୋ ମାଆ, ମୋ ଦେଶ, ମୋ ଜାତିର ଗୁଣ ବର୍ଣ୍ଣିବାରେ ମୋ ଭଳି କ୍ଷୁଦ୍ର ସାହିତ୍ୟିକମାନଙ୍କୁ ଆପଣ ଗତଥର ହୋଇ ସୁଯୋଗ ପ୍ରଦାନ କଲେ ଚିରୋପକୃତ ହୁଅନ୍ତି ।

**ଲେଖା ପଠାନ୍ତୁ, ଉପଯୁକ୍ତ ବିବେଚିତ ହେଲେ ନିଶ୍ଚୟ ପ୍ରକାଶ ପାଇବ ।

**ଉପେନ୍ଦ୍ର କୁମାର ସାମଲ,
ମଧୁପୁର ହାଇସ୍କୁଲ, ପୂର୍ବ ଯାଜପୁର,
ପୋଷ୍ଟ–କନିକାପଡ଼ା, ମଙ୍ଗଳପୁର,
କଟକ–୭୫୫୦୩୬ ।**

*ମହାଶୟ, ଉତ୍କଳ ଦିବସ ପାଳନର ଶୁଭ ଅବସରରେ 'ଉତ୍କଳ ପ୍ରସଙ୍ଗ' ପରିବାରର ସମସ୍ତ ସଦସ୍ୟମାନଙ୍କୁ ଅଭିନନ୍ଦନ ଜଣାଉଛି । ଆପଣଙ୍କ ସୁନାମଧନ୍ୟ ପତ୍ରିକାଟି ସମାଜର ପ୍ରତ୍ୟେକ ସ୍ତରରେ ଆଦୃତ ହୋଇପାରିଛି । ଯଦିଓ ଏହାର ପ୍ରସାରଣ ସୀମିତ ଓ ଏହା ପ୍ରତ୍ୟେକ ପାଠକ ପକ୍ଷେ ଦୁର୍ଲଭ ହୋଇ ଉଠିଛି । ଉତ୍କଳ ଦିବସ ବିଶେଷାଙ୍କଟି ଉତ୍କଳ ଦିବସ ପାଳନର ସୃଷ୍ଟି, ପୃଷ୍ଠଭୂମି ସମ୍ପର୍କରେ ପାଠକମାନଙ୍କୁ ବହୁ ଅନାଲୋଚିତ ଘଟଣା ସମ୍ପର୍କରେ ଅବହିତ କରିବାରେ ସକ୍ଷମ ହୋଇପାରିଛି । ସରକାରଙ୍କ କାର୍ଯ୍ୟକ୍ରମର ସଫଳ ରୂପାୟନ ଓ ପ୍ରସ୍ତୁତ ଦିଗରେ ଏହି ପତ୍ରିକାଟି ମଧ୍ୟ ପାଠକମାନଙ୍କୁ ଖୋରାକ ଯୋଗାଇ ପାରିଛି । ମୋର ମତ, ଯେଉଁ ତଥ୍ୟ ସମ୍ବଳିତ ବିଷୟ ଓ ନିବନ୍ଧ ପ୍ରକାଶ କରାଯାଉଛି ତାହା ସୀମିତ ନହୋଇ ବିସ୍ତୃତ ଆଲୋଚନା ହେବା ଉଚିତ ।

**ମତାମତ ପାଇଁ ଧନ୍ୟବାଦ ଦେଉଛୁ । ଆପଣଙ୍କ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ ଅବ୍ୟାହତ ରହିବ ।

**ଶ୍ରୀ ଗଙ୍ଗାଧର ସୁତାର (ଗ୍ରା: ନଂ:୨/୯୨),
ଶଙ୍କର ଇଞ୍ଜିନିୟରିଂ ୱାର୍କସ୍,
୪୦, ଷ୍ଟ୍ରାଣ୍ଡ ରୋଡ, ରୁମ୍ ନଂ ୩୦–ଏ,
ଫାଷ୍ଟ ଫ୍ଲୋର୍, କଲିକତା–୭୦୦୦୦୧ ।**

*ମହାଶୟ, ଉତ୍କଳ ପ୍ରସଙ୍ଗ ମାର୍ଚ୍ଚ ଓ ଏପ୍ରିଲ୍ ସଂଖ୍ୟା ମୁଁ ଆଜି ସନ୍ଧ୍ୟାରେ ଡାକରୁ ପାଇଲି । ଉତ୍କଳ ଦିବସ ବିଶେଷାଙ୍କ ସଂଖ୍ୟାରେ ଶ୍ରୀଯୁକ୍ତ ବିଧୁ ପଟ୍ଟନାୟକଙ୍କ 'ମୋ ସ୍ୱପ୍ନର ଓଡ଼ିଶା', ଶ୍ରୀ ରାଜାରାମ ମେହେରଙ୍କର 'ମେହେର ସାହିତ୍ୟରେ

ଜାତୀୟ ଚେତନା', ଶ୍ରୀ ସୁରେନ୍ଦ୍ର କୁମାର ଭୂୟାଁଙ୍କର 'ସାମାଜିକ ପାର୍ଟିକିଟ' ପଢ଼ି ଖୁବ୍ ଆନନ୍ଦିତ ହେଲି । ଉତ୍କଳ ... ବିଶେଷାଙ୍କ ସର୍ବୋପରି ଉଚ୍ଚକୋଟୀର ହୋଇଛି । ଆଗାମୀ ରଥଯାତ୍ରା ବିଶେଷାଙ୍କଟି ଏଇଭଳି ଉଚ୍ଚମାନର ହେବ ବୋଲି ଆଶା କରେ । ପ୍ରଭୁ ଜଗନ୍ନାଥ ଉତ୍କଳ ପ୍ରସଙ୍ଗର ସୋପଥରେ ସହାୟ ହୁଅନ୍ତୁ, ଏଇ କାମନା କରି ରହିଲି ।

**ମତାମତ ପାଇଁ ଧନ୍ୟବାଦ । ରଥଯାତ୍ରା ବିଶେଷାଙ୍କ ଇତିମଧ୍ୟରେ ପ୍ରକାଶ ପାଇସାରିଛି, ମତାମତ ଦେବାକୁ ଅନୁରୋଧ ।

ଶ୍ରୀ ନାରାୟଣ ପଟ୍ଟନାୟକ,
ମୃତ୍ତିକା ସଂରକ୍ଷଣ ବିଭାଗ,
ଢେଙ୍କାନାଳ-୭୫୯୦୦୧ ।

*ରଥଯାତ୍ରା ବିଶେଷାଙ୍କ ୧୯୯୨ଟି ଅତି ଉନ୍ନତ ମାନର ହୋଇଥିବାରୁ ଉତ୍କଳ ପ୍ରସଙ୍ଗ ସମ୍ପାଦକ ମହୋଦୟଙ୍କୁ ମୋର ଆନ୍ତରିକ ପ୍ରଣାମ ।

**ମତାମତ ପାଇଁ ଧନ୍ୟବାଦ ।

ପ୍ରଦୀପ୍ତ କୁମାର ପାଲ୍,
କ୍ୱାର୍ଟର ନଂ ୩-ଆର୍-୫/୧,
ୟୁନିଟ୍-୪, ଭୁବନେଶ୍ୱର ।

*ଉତ୍କଳ ପ୍ରସଙ୍ଗର 'ରଥଯାତ୍ରା ବିଶେଷାଙ୍କ' ସଂଖ୍ୟା ଖୁବ୍ ଭଲ ଲାଗିଲା । ପ୍ରଃ ଗୌରୀକୁମାର ବ୍ରହ୍ମା, ଶ୍ରୀ ଜୟଶଙ୍କର ନାୟକ ଓ ରଜତ କୁମାର କରଙ୍କର ଲେଖାରୁ ଅନେକ ଅଜଣା ତଥ୍ୟ ଜାଣିପାରିଲି । ଏଥିପାଇଁ ଧନ୍ୟବାଦ ।
ଉତ୍କଳ ପ୍ରସଙ୍ଗର ଦାମକୁ ହଠାତ୍ ଦୁଇ ଟଙ୍କାରୁ ଚାରି ଟଙ୍କାକୁ କାହିଁକି ବଢ଼ାଇଲେ ?

**କେବଳ ରଥଯାତ୍ରା ସ୍ୱତନ୍ତ୍ର ସଂଖ୍ୟାଟିକୁ ଚାରିଟଙ୍କା କରାଯାଇଥିଲା ।

## ପ୍ରଶ୍ନ କର୍ତ୍ତାଙ୍କ ପାଇଁ କୁପନ

ପ୍ରଶ୍ନ କର୍ତ୍ତାଙ୍କ ଠିକଣା

ନାମ ........................

ଗ୍ରାମ ........................

ପୋଷ୍ଟ ........................

ଜିଲ୍ଲା ........................ ପିନ୍ ........

କେବଳ ୩୧/୧୦/୧୯୯୨ ପୂର୍ବରୁ ବ୍ୟବହାର ପାଇଁ

ମତାମତ ବା ପ୍ରଶ୍ନ

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

..........................................................................

ସ୍ୱାକ୍ଷର






## ପ୍ରଗତି ପଥେ "ପ୍ରକୃତି ମିତ୍ର" – ପ୍ରଗତି ପାଠାଗାର

ସବୁଜ ଶାଢ଼ୀର ଓଢ଼ଣୀ ତଳୁ ପ୍ରକୃତି ରାଣୀଙ୍କ ସୁନ୍ଦର ଠାଣୀ ଆବହମାନ କାଳରୁ ଜନ-ମାନସକୁ ଆପ୍ୟାୟିତ କରିଆସିଛି । ଦୁଃଖ-ଶୋକ, ଲୁହ-କୋହ ଭରା ସଂସାରରେ ଚିର ସବୁଜିମା ଧରିତ୍ରୀକୁ ଦେଖିଦେଲେ ଯେ, ଆପେ ଆପେ ଲୁହ ଶୁଖିଯାଏ ଏବଂ ହୃଦୟରେ ଆଲୋକର ସନ୍ଧାନ ମିଳେ, ଏଥିରେ ଦ୍ୱିମତ ନାହିଁ । ଆଜି ପୃଥିବୀ ପୃଷ୍ଠରୁ ପରିବେଶର ସୁରକ୍ଷା ଆହ୍ୱାନ ସୃଷ୍ଟି ହୋଇଛି । କାରଣ ଆମର ବୃକ୍ଷ-ଲତା, ଆମ ସମ୍ପଦକୁ ଆମେ କୁଠାରାଘାତ କରି ଚାଲିଛେ । ଏହାର ଧ୍ୱଂସ ସହ ମାନବ ସମାଜର ବିଲୋପ ଅବଶ୍ୟମ୍ଭାବୀ ଏଥିରେ ସନ୍ଦେହ ନାହିଁ । ଏଣୁ ଜୁନ୍ ୫ ତାରିଖକୁ ସାରା ବିଶ୍ୱରେ ବିଶ୍ୱ ପରିବେଶ ଦିବସ ରୂପେ ପାଳନ କରାଯାଉଛି । ଏ ଅବସରରେ ଜନଚେତନା ସୃଷ୍ଟି ସହ ସାଧାରଣ ଆଲୋଚନା, ବୃକ୍ଷଲତା ରୋପଣ ପ୍ରଭୃତି ଆୟୋଜନ କରାଯାଉଛି । ଆମ ଓଡ଼ିଶା ସରକାର ୧୯୮୫ ଜୁନ୍ ୫ ତାରିଖ ପରିବେଶ ଦିବସ ପାଳନ ଅବସରରୁ ଉଲ୍ଲେଖନୀୟ ପରିବେଶ ସୁରକ୍ଷା ଓ ସଂରକ୍ଷଣ କାର୍ଯ୍ୟ ପାଇଁ ପ୍ରତି ଜିଲ୍ଲାର ସର୍ବଶ୍ରେଷ୍ଠ ଗ୍ରାମ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ "ପ୍ରକୃତି ମିତ୍ର" ପୁରସ୍କାର ଏବଂ ବ୍ୟକ୍ତିବିଶେଷଙ୍କୁ "ପ୍ରକୃତି ବନ୍ଧୁ" ପୁରସ୍କାର ପ୍ରଦାନ କରି ଆସୁଛନ୍ତି । "ପ୍ରକୃତି ମିତ୍ର" ପୁରସ୍କାରରେ ୫ ହଜାର ଟଙ୍କା ଏବଂ ପ୍ରଶଂସା ପତ୍ର ଏବଂ "ପ୍ରକୃତି ବନ୍ଧୁ"ରେ ୨ ହଜାର ଟଙ୍କା ଏବଂ ପ୍ରଶଂସା ପତ୍ର ପ୍ରଦାନ କରାଯାଇଥାଏ ।

୧୯୯୧-୯୨ର "ପ୍ରକୃତି ବନ୍ଧୁ" ପୁରସ୍କାର ଗଞ୍ଜାମ ଜିଲ୍ଲାର କବିସୂର୍ଯ୍ୟନଗର ବ୍ଲକର "ନନ୍ଦିଆଗଡ଼" ଗ୍ରାମର ମା' ଗ୍ରାମ ଠାକୁରାଣୀ ଜନ କଲ୍ୟାଣ ସମିତିର ସମ୍ପାଦକ ଶ୍ରୀ ଅରୁଣ ମୋହନ ପାତ୍ରଙ୍କୁ ମିଳିଥିବା ବେଳେ ସର୍ବୋତ୍କୃଷ୍ଟ ଗ୍ରାମରେ ଧରାକୋଟ ବ୍ଲକ୍ ଅନ୍ତର୍ଗତ ବାହାଡ଼ାଗୁଡ଼ା ଗ୍ରାମକୁ "ପ୍ରକୃତି ମିତ୍ର" ପୁରସ୍କାର ମିଳିଛି । ଏ ଗ୍ରାମର ଲୋକମାନେ ଏକ୍ୟବଦ୍ଧ ଭାବେ ଗ୍ରାମପଞ୍ଚାୟତ ନିଷ୍ପତ୍ତି ସହିତ ସାମାଜିକ ବନୀକରଣପ୍ରକଳ୍ପ ସହାୟତାରେ ୫୦ ଏକର ପରିମିତ ଲମ୍ବା ପାହାଡ଼ରେ ବ୍ୟାପକ ବୃକ୍ଷରୋପଣ କରି ଏହାକୁ ସୁରକ୍ଷିତ ରଖିପାରି ଏକ ଶ୍ୟାମଳିମା ପ୍ରକୃତି ରାଣୀ ସୃଷ୍ଟି କରିପାରିଛନ୍ତି । ଏତଦ୍ ବ୍ୟତୀତ ନିଜସ୍ୱ ଉଦ୍ୟମରେ ୭ ଏକର ଜମିରେ ଏକ ଜଙ୍ଗଲ ସୃଷ୍ଟି କରିପାରିଛନ୍ତି । ଏଣୁ ଓଡ଼ିଶା ସରକାରଙ୍କ ଜଙ୍ଗଲ ଏବଂ ପରିବେଶ ବିଭାଗ ଗତ ୫ ତାରିଖ ଜୁନ୍ ୧୯୯୨ ଦିନ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ଓଡ଼ିଶାର ସଂସ୍କୃତି, କ୍ରୀଡ଼ା, ଯୁବ କଲ୍ୟାଣ ଏବଂ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଶରତ କୁମାର କରଙ୍କ ଦ୍ୱାରା ଏ ପୁରସ୍କାର ବିତରଣ କରିଛନ୍ତି ।

ସର୍ବୋତ୍କୃଷ୍ଟ ସ୍ୱେଚ୍ଛାସେବୀ ଅନୁଷ୍ଠାନ ରୂପେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଉପଖଣ୍ଡସ୍ଥିତ ଦିଗପହଣ୍ଡି ବ୍ଲକ୍‌ର ନିମଖଣ୍ଡିପେଣ୍ଠସ୍ଥିତ "ପ୍ରଗତି ପାଠାଗାର"କୁ "ପ୍ରକୃତି ମିତ୍ର" ପୁରସ୍କାର ୧୯୯୧-୯୨ ପାଇଁ ପ୍ରଦାନ କରାଯାଇଛି । ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ବ୍ଲକ୍‌ରେ ପରିବେଶ ସୁରକ୍ଷା ସହ ବିଭିନ୍ନ ଜନସଚେତନ ଉନ୍ନୟନ କାର୍ଯ୍ୟରେ ଏହି ଅନୁଷ୍ଠାନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ୧୯୮୩ରେ "ପ୍ରଗତି ପାଠାଗାର" ଜନ୍ମଲାଭ କଲା ଓ ଯେତେବେଳେ ଭୀଷ୍ମଗିରି, କେରାଣ୍ଡିମାଳ ଆଦି ଜଙ୍ଗଲ କ୍ଷୟ ହୋଇ ଆସୁଥିଲା ଏବଂ ଦଲାଲ, ସ୍ୱେଚ୍ଛା ବେପାରୀଙ୍କ ତରା ଭୂମିରେ ପରିଣତ ହୋଇ ଗଛକଟା ଚାଲିଲା ସେତେବେଳେ ପ୍ରଗତି ପାଠାଗାର ମୁଣ୍ଡଟେକି ଉଠିଲା । ନିମଖଣ୍ଡିପେଣ୍ଠକୁ ଲାଗି ଅଭୟାରଣ୍ୟ, ହାତୀମାନଙ୍କର ବାସସ୍ଥଳୀ ଲୋପ ହେବାକୁ ନଦେବାକୁ ଏ ଅନୁଷ୍ଠାନ ଅଣ୍ଟା ଭିଡ଼ି ଠିଆ ହେଲା । ଗାଁର ବିଭିନ୍ନ ଲୋକଙ୍କ ମାଧ୍ୟମରେ ପ୍ରତି ଗ୍ରାମର ଲୋକମାନେ ନିଜ ସଂଲଗ୍ନ ଜଙ୍ଗଲର ସୁରକ୍ଷା ଦାୟିତ୍ୱ ନେବାକୁ ପ୍ରଚେଷ୍ଟା କରି ସଫଳ ହୋଇପାରିଛି । "ପ୍ର... ଜାଗ୍ରତ ହୁଅ, ଜୀବନର ଲକ୍ଷ୍ୟସ୍ଥଳରେ ପହଞ୍ଚିଲା ଯାଏଁ ବିଶ୍ରାମ ନିଅନାହିଁ" ପ୍ରଗତିର ମହାନ ମନ୍ତ୍ର ରୂପେ ପ୍ରଗତି ପାଠାଗାର ହୃଦୟରେ ଧାରଣ କରିଛି ।

ଗ୍ରାମର ନିରକ୍ଷରଙ୍କୁ ସାକ୍ଷର କରିବା ପାଇଁ ଜନଶିକ୍ଷା କାର୍ଯ୍ୟକ୍ରମ ୧୯୮୮-୮୯ ଏବଂ ୧୯୯୦-୯୧ରେ ଦିଗପହଣ୍ଡି ବ୍ଲକ୍‌ର ୩ଟି ଗ୍ରାମ ପଞ୍ଚାୟତରେ ୩୦ଟି ଲେଖାଏଁ ୯୦ଟି ପ୍ରୌଢ଼ଶିକ୍ଷା କେନ୍ଦ୍ର ଖୋଲିଲେ । ଏଥିପାଇଁ ସାକ୍ଷରତା ମେଳା, କର୍ମଶାଳା, ଜନସଭା, ଆଲୋଚନା ଚକ୍ର କରିବା ସହ "ଗାଁ ଗହଳି", "ସୁପଥ", "ପରିବେଶ ଓ ଜୀବନ", "ହସି ହସାଇବା ସଜନ ଜନେ" ପ୍ରଭୃତି ପତ୍ରିକା ପ୍ରକାଶନ କରିଲେ । ବର୍ତ୍ତମାନ ଗଞ୍ଜାମ ଜିଲ୍ଲାର ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନରେ "ପ୍ରଗତି ପାଠାଗାର" କର୍ଣ୍ଣଖଣ୍ଡି, ଖମାରିଗାଁ ଓ ନିମଖଣ୍ଡିପେଣ୍ଠ ଗ୍ରାମପଞ୍ଚାୟତକୁ ନେଇଛି ।

୫ଟି ବ୍ଲକ୍‌ର ୫୦ଟି ଗ୍ରାମରେ ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର ଖୋଲାଯାଇ ପଢ଼ାଯାଉଛି । ପରିବେଶର ସୁରକ୍ଷା ନିମନ୍ତେ ଜନ ସଚେତନତା ସୃଷ୍ଟି କରିବାରେ ପ୍ରଗତି ପାଠାଗାର ସଫଳ ହୋଇପାରିଛି । ବୃକ୍ଷ ରୋପଣ ସହ ଚିର ହରିତ୍ ବୃକ୍ଷର ସୁରକ୍ଷା ପାଇଁ ଗ୍ରାମ କମିଟିକୁ ଅନ୍ତର୍ଭୁକ୍ତ କରିପାରିଛନ୍ତି । ପରିବେଶର ସୁରକ୍ଷା

ଓଡ଼ିଶା ସରକାରଙ୍କ "ଓରିଡ଼ା" ସଂସ୍ଥା ସହାୟତାରେ ପାଠାଗାର ଦ୍ୱାରା ୧୯୮୭ରେ ପ୍ରାୟ ୨୦୦ଟି ଧୂମ ବିହୀନ ଚୁଲ୍ଲୀ ନିର୍ମାଣ କରାଯାଇଛି। ୧୯୯୧ରେ ଏ ଅଞ୍ଚଳର ବିଭିନ୍ନ ଗ୍ରାମରେ ଅଧିକ ଏହି ଧରଣର ଚୁଲ୍ଲୀ ନିର୍ମାଣ ପାଇଁ "ଓରିଡ଼ା" ସ୍ୱୀକୃତି ଦେଇଛି। ସାମାଜିକ ବନୀକରଣରେ ନିମଖଣ୍ଡିପେଣ୍ଠ ଓ ନିକଟସ୍ଥ ଗ୍ରାମମାନ କି ପାଇଁ ବନୀକରଣରେ ନିମଖଣ୍ଡିପେଣ୍ଠ ଓ ନିକଟସ୍ଥ ଗ୍ରାମମାନ କି ସୁନ୍ଦର ଦେଖାଯାଉଛି। ନାରିକେଳ ଉଦ୍ୟାନ ସହ ପଡ଼ିଆରେ ବୃକ୍ଷ ରୋପଣ ଅନୁଷ୍ଠାନ ଦ୍ୱାରା କରାଯାଇଛି।

ପରିବେଶ ନିର୍ମଳ ଓ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ସୁଲଭ ପାଇଖାନା ସାହାଯ୍ୟରେ ଘରେ ଘରେ ପାଇଖାନା ନିମନ୍ତେ ପାଠାଗାର ତରଫରୁ ପଦକ୍ଷେପ ନିଆଯାଇଛି। ଓଡ଼ିଶା ସରକାରଙ୍କ ବିଜ୍ଞାନ, କାରିଗରି ଓ ପରିବେଶ ବିଭାଗର ଅନୁଦାନ କ୍ରମେ ୧୯୮୯ରେ ଦୁଇଦିନିଆ କର୍ମଶାଳା ଅନୁଷ୍ଠିତ ହୋଇଥିଲା। ପ୍ରତି ବର୍ଷ ଜୁନ୍ ପ୍ରଥମ ସପ୍ତାହରେ ବିଶ୍ୱ ପରିବେଶ ଉପଲକ୍ଷେ ସାଧାରଣ ସଭା, ପଦଯାତ୍ରା କରାଯାଉଛି। ବିଶ୍ୱ ସ୍ୱାସ୍ଥ୍ୟ ଦିବସ ଅପ୍ରେଲ ୭ ତାରିଖରେ ପ୍ରତି ବର୍ଷ ପାଳିତ ହୋଇ ଲୋକଙ୍କୁ ଅନ୍ତର୍ଭୁକ୍ତ କରାଯାଉଛି। ଏହି ପ୍ରଗତି ପାଠାଗାରର ସମ୍ପାଦକ ଶ୍ରୀ ସୁରେନ୍ଦ୍ରନାଥ ପାଣିଗ୍ରାହୀଙ୍କୁ ପରିବେଶର ଜାତୀୟ ଆଲୋଚନା ଚକ୍ରରେ ଯୋଗଦେବା ପାଇଁ ନେହେରୁ ଯୁବ କେନ୍ଦ୍ର ଦ୍ୱାରା ନୂଆଦିଲ୍ଲୀ, ଏକ ଆନ୍ତର୍ଜାତିକ ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ମାଲେସିଆ ଓ ସିଙ୍ଗାପୁର ଯାଇଥିଲେ। ୧୯୯୦ରେ ଭାରତ ସରକାରଙ୍କ କ୍ଷେତ୍ର ପ୍ରଚାର ସଂସ୍ଥା ଦ୍ୱାରା ଉତ୍ତର ଭାରତକୁ ଯାଇଥିବା ବେଳେ ସେହି ବର୍ଷ ଶେଷ ବେଳକୁ ଅନୁଷ୍ଠାନର ଏକ୍‌ଜିକ୍ୟୁଟିଭ୍ ଡାଇରେକ୍ଟର ଅଶ୍ୱିନୀ ପାଣ୍ଡଙ୍କୁ ଦକ୍ଷିଣ ଭାରତ ପ୍ରେରଣ କରାଯାଇ ପରିବେଶ ଉନ୍ନୟନ ବିଧାନ ଲାଗି ଅନୁଭୂତି ଆହରଣର ସୁଯୋଗ ଦିଆଯାଇଥିଲା।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା "ବନଜ୍ୟୋତ୍ସ୍ନା ପଲ୍ଲୀଶ୍ରୋତା ମଣ୍ଡଳୀ" ଏ ଗ୍ରାମରେ ଗଠନ କରାଯାଇ ଜନଚେତନା ସୃଷ୍ଟି କରାଯାଇ ପାରିଛି। ଏଥିପାଇଁ ପାଠାଗାରର କର୍ମକର୍ତ୍ତାମାନେ କର୍ଣ୍ଣଧାର ଭାବେ କାର୍ଯ୍ୟ ସମ୍ପାଦନ କରୁଛନ୍ତି। ଚଳିତ ବର୍ଷର ନିକଟ ଭବିଷ୍ୟତରେ ସୂଚନା ଓ ଲୋକ ସମ୍ପର୍କ ବିଭାଗର ଜିଲ୍ଲା ସ୍ତରୀୟ ପଲ୍ଲୀଶ୍ରୋତା ମଣ୍ଡଳୀ ଆଲୋଚନା ଚକ୍ର, କୃଷିକ ତାଲିମ କର୍ମଶାଳା ଏବଂ ଗ୍ରାମ୍ୟ ପ୍ରଦର୍ଶନୀ କରାଯିବା ପାଇଁ ସରକାରୀ ଅନୁଦାନ ଆସିଛି। ଏହାର "ବିକାଶ କାହାଣୀ" କଟକ ଆକାଶବାଣୀରେ ପ୍ରଚାର ନିମନ୍ତେ ପଦକ୍ଷେପ ନିଆଯାଇଛି।

ଗଞ୍ଜାମର ନଭେମ୍ବର ୧୯୯୦ ପ୍ରଳୟଙ୍କରୀ ବନ୍ୟାବେଳେ ଏ ଅନୁଷ୍ଠାନର ସେବା ଉଲ୍ଲେଖନୀୟ। ଏ ଅନୁଷ୍ଠାନ ଦ୍ୱାରା ପୁନଃ ଥଇଥାନ ଓ ସାମାଜିକ ବନୀକରଣ ବନ୍ୟାଗ୍ରସ୍ତ ଅଞ୍ଚଳରେ ଆଶାତୀତ ସଫଳ ହୋଇଛି। ଏଣୁ "ପ୍ରକୃତି ମିତ୍ର" ପୁରସ୍କାର "ପ୍ରଗତି ପାଠାଗାର"କୁ ଦିଆଯାଇ ଏ ଜିଲ୍ଲାର ଅନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ନବପ୍ରେରଣା ଯୋଗାଇ ଦିଆଯାଇଛି।

*ଶ୍ରୀ ଦାମୋଦର ପାଢ଼ୀ,*
*ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,*
*ବ୍ରହ୍ମପୁର, ଗଞ୍ଜାମ।*



ଓଡ଼ିଶା ମହିଳା "ଆଡ୍‌ଭେଞ୍ଚରସ୍ କ୍ଲବ୍"ର ସଦସ୍ୟାମାନେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରୁଛନ୍ତି (୨୩/୭)।

# ସମ୍ବାଦ ପରିକ୍ରମା

## -ଦେଶର ଜନସଂଖ୍ୟା ବୃଦ୍ଧିକୁ ଯୁଦ୍ଧକାଳୀନ ଭିତ୍ତିରେ ମୁକାବିଲା କରିବାରେ ହେଳା କରାନଯାଉ

**–ରାଜ୍ୟପାଳ ଶ୍ରୀ ଶର୍ମା**

ଭାରତର ଜନସଂଖ୍ୟା ବୃଦ୍ଧିକୁ ରୋକିବା ନିମନ୍ତେ ଅଗ୍ରାଧିକାର ଭିତ୍ତିରେ ବହୁକାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲେ ମଧ୍ୟ ଜନସଂଖ୍ୟା ବୃଦ୍ଧି ବାସ୍ତବିକ ଏକ ଗଭୀର ଚିନ୍ତାର ବିଷୟ ଓ ସେଥିପାଇଁ ଗଣଚେତନା ଜାଗ୍ରତ କରିବା ସହିତ ଏହାର କାରଣ ଅନ୍ୱେଷଣ ପାଇଁ ପ୍ରଚେଷ୍ଟା ଜାରି ରଖାଯିବାକୁ ଓଡ଼ିଶାର ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମା ପରାମର୍ଶ ଦେଇଛନ୍ତି ।

ସମ୍ପ୍ରତି ଭୁବନେଶ୍ୱରସ୍ଥିତ କେଣ୍ଟିଲଓ୍ୱର୍ଥ ହୋଟେଲ୍‌ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଜନସଂଖ୍ୟା ଗବେଷଣା କେନ୍ଦ୍ର, ବମ୍ବେସ୍ଥିତ ଆନ୍ତର୍ଜାତିକ ଜନସଂଖ୍ୟା ବିଜ୍ଞାନ କେନ୍ଦ୍ର ଓ ହନଲୁଲୁଠାରେ ଅବସ୍ଥିତ ପ୍ରାଚ୍ୟ ପାଶ୍ଚାତ୍ୟ ଜନସଂଖ୍ୟା କେନ୍ଦ୍ରର ମିଳିତ ଉଦ୍ୟମରେ ୧୫ ଦିନ ଧରି ଚାଲିଥିବା "ଜନସଂଖ୍ୟା ବୃଦ୍ଧି କାରଣ ସମୀକ୍ଷା" ଶୀର୍ଷକ କର୍ମଶାଳାର ଉଦ୍‌ଯାପନୀ କାର୍ଯ୍ୟକ୍ରମରେ ମାନ୍ୟବର ରାଜ୍ୟପାଳ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ବିଭିନ୍ନ ରାଜ୍ୟରୁ ଆସି ଯୋଗ ଦେଇଥିବା ପ୍ରତିନିଧିମାନଙ୍କୁ ସମ୍ବୋଧିତ କରିଥିଲେ ।

ଗତ ୩ ଦଶକ ମଧ୍ୟରେ ଜନସଂଖ୍ୟାବୃଦ୍ଧିକୁ ରୋକିବାକୁ ପ୍ରଚେଷ୍ଟା କରାଯାଉଥିଲେ ମଧ୍ୟ ତାହା ଆଶାନୁରୂପ ଫଳପ୍ରଦ ହୋଇ ପାରିନାହିଁ । ଏହାର କାରଣ ନିର୍ଦ୍ଧାରଣ କରିବା ନିମନ୍ତେ ସମସ୍ତ ଉଦ୍ୟମକୁ ଅବ୍ୟାହତ ରଖିବାକୁ ସେ ପରାମର୍ଶ ଦେଇଥିଲେ । ଦେଶର ଜନସଂଖ୍ୟାର ଏକ ବିରାଟ ଅଂଶ ଗ୍ରାମାଞ୍ଚଳରେ ରହୁଥିବାରୁ ଓ ସେମାନଙ୍କର ଆର୍ଥିକ ଅବସ୍ଥା ଯୋଗୁଁ ଲୋକସଂଖ୍ୟା କମାଯିବା ବିଷୟଟିକୁ ସେମାନେ ଗୁରୁତ୍ୱ ଦେଉନଥିବା କାରଣ ହୋଇପାରେ । ଏହି ସମସ୍ୟାଟିକୁ ସ୍ୱତନ୍ତ୍ର ଭାବେ ବିଚାର ନକରି ସାମୁହିକ ଭାବେ ଏହାର ସମୀକ୍ଷା ଏକାନ୍ତ ପ୍ରୟୋଜନ ବୋଲି ଶ୍ରୀ ଶର୍ମା ମଧ୍ୟ ପରାମର୍ଶ ଦେଇଥିଲେ । ଜନସଂଖ୍ୟା ବୃଦ୍ଧିକୁ ସୀମିତ ରଖିବା କେବଳ ସରକାରୀ ପ୍ରଚେଷ୍ଟା ଦ୍ୱାରା ସମ୍ଭବ ନୁହେଁ ଓ ଏଥି ନିମନ୍ତେ ଜନଚେତନା ଜାଗୃତି ସହ ସମସ୍ତଙ୍କର ନିଷ୍ଠାପର ସହଯୋଗ ଏକାନ୍ତ ପ୍ରୟୋଜନ ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ । କର୍ମଶାଳାରେ ଆଲୋଚିତ ପ୍ରସ୍ତାବମାନ କାର୍ଯ୍ୟକାରୀ କରାଗଲେ ଏହି ଜ୍ୱଳନ୍ତ ସମସ୍ୟାଟିକୁ ପ୍ରଶମିତ କରାଯାଇ ପାରିବ ବୋଲି ଶ୍ରୀ ଶର୍ମା ଆଶା ପୋଷଣ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଏସ୍. ଅ... ତାଙ୍କର ଅଭିଭାଷଣରେ ୧୯୫୨ ରେ ଜନସଂଖ୍ୟା ୩୬ କୋଟି ଥିବାବେଳେ ତାହା ବଢ଼ି ବଢ଼ି ୮୬ କୋଟିରେ ପହଞ୍ଚିବା ଯୋଜନାକାରୀମାନଙ୍କର ଗଭୀର ଉଦ୍‌ବେଗର କାରଣ ହୋଇଛି ବୋଲି କହିଥିଲେ । ଏହାର କାରଣ ନିର୍ଦ୍ଧାରଣ କେବଳ କର୍ମଶାଳାରେ ସୀମିତ ନହୋଇ ଜନଚେତନାକୁ ଜାଗ୍ରତ କରାଯିବା ପାଇଁ ପଞ୍ଚାୟତ ସ୍ତରରେ ଚେଷ୍ଟା କରାଯିବାକୁ ସେ ପରାମର୍ଶ ଦେଇଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ଜନସଂଖ୍ୟା ଗବେଷଣା କେନ୍ଦ୍ରର ଶ୍ରୀ ବି: ବି: ହୋତା, ପ୍ରାଚ୍ୟ–ପାଶ୍ଚାତ୍ୟ ଜନସଂଖ୍ୟା କେନ୍ଦ୍ରର ପ୍ରତିନିଧି ଶ୍ରୀ ରବର୍ଟ ରୁଥରଫୋର୍ଡ୍ ଏହି କାର୍ଯ୍ୟକ୍ରମରେ ଯୋଗଦାନ କରି ଜନସଂଖ୍ୟା ବୃଦ୍ଧି ଯେ କେବଳ ଭାରତର ସମସ୍ୟା ତା ନୁହେଁ, ଏହା ବିଶ୍ୱର ଏକ ବିରାଟ ସମସ୍ୟା ବୋଲି ସେମାନେ କହିଥିଲେ । ଏହି କର୍ମଶାଳାରେ ଆଲୋଚିତ ବିବିଧ ସମୟୋପଯୋଗୀ ପ୍ରସ୍ତାବମାନ କାର୍ଯ୍ୟକାରୀ କରାଗଲେ ନିଶ୍ଚିତ ଭାବରେ ଜନସଂଖ୍ୟା ରୋକାଯାଇ ପାରିବ ବୋଲି ପ୍ରକାଶ କରିଥିଲେ ।

ଆନ୍ତର୍ଜାତିକ ଗବେଷଣା କେନ୍ଦ୍ରର ପଦାଧିକାରୀ ଶ୍ରୀ ଆର୍: ପି: ତ୍ୟାଗୀ ସମସ୍ତ ଅତିଥିମାନଙ୍କୁ ଓ ପ୍ରତିନିଧିମାନଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

## ଭାରତ ଛାଡ଼ ଆନ୍ଦୋଳନର ଜ୍ୱଳନ୍ତ ଗାଥା ଯୁବ ସମାଜର ମାର୍ଗଦର୍ଶକ ହେଉ

ଗତ ଅଗଷ୍ଟ ୯ ତାରିଖ ପ୍ରଭାତରେ ଭୁବନେଶ୍ୱରସ୍ଥିତ ଶହୀଦ ସ୍ମୃତି ମୀନାରଠାରେ ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସମିତି ତରଫରୁ ଭାରତ ଛାଡ଼ ଆନ୍ଦୋଳନର ସ୍ୱର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଆୟୋଜିତ ଏକ ଉତ୍ସବାନୁଷ୍ଠାନରେ ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ।

ଭାରତ ଛାଡ ଆନ୍ଦୋଳନକୁ ସ୍ୱାଧୀନତା ସଂଗ୍ରାମ ଇତିହାସର ଏକ ତେଜସ୍ୱୀ ଅଧ୍ୟାୟ ବୋଲି ଅଭିହିତ କରି ଶ୍ରୀ ଶର୍ମା ଦେଶପାଇଁ ଆତ୍ମବଳି ଦେଇଥିବା ସହସ୍ରାଧିକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଶ୍ରଦ୍ଧାଞ୍ଜଳି

...ଭକ୍ତି ଅର୍ପଣ କରିଥିଲେ । ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ, ...ଭାଇ ପଟେଲ ଓ ବହୁ ପ୍ରଖ୍ୟାତ ମୁକ୍ତି ସଂଗ୍ରାମୀମାନଙ୍କର ପ୍ରଦର୍ଶିତ ...ଓ ମରୋ" ଯାହାକି ପରାଧୀନତାର ଶୃଙ୍ଖଳରୁ ଦେଶକୁ ସମ୍ପୂର୍ଣ୍ଣ ମୁକ୍ତ ...ଥିଲା । ଚେତନାର ସେହି ଦୀପ୍ତିମାନ୍ ଶିଖା ଆଜି ସମସ୍ତଙ୍କର ...ନ୍ତଃକରଣକୁ ଉଦ୍ଦୀପିତ ଓ ଆଲୋକିତ କରୁ ଏହା ଶ୍ରୀ ଶର୍ମା ...ମନା କରିଥିଲେ । ଏହି ଅବସରରେ ଡକ୍ଟର ଜଗନ୍ନାଥ ...ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ଇଂରାଜୀ ପୁସ୍ତକ "ଭାରତ ଛାଡ଼ ...ଆନ୍ଦୋଳନରେ ଓଡ଼ିଶାର ପ୍ରମୁଖ ଭୂମିକା" ରାଜ୍ୟପାଳ ଉନ୍ମୋଚନ କରି ...ଦେଶାତ୍ମବୋଧର ଏହି ଜ୍ୱଳନ୍ତ ଗାଥା ଆଗାମୀ କାଲିର ଯୁବସମାଜକୁ ...ଉଦ୍ବୁଦ୍ଧିତ କରୁ ବୋଲି ଆଶା ପୋଷଣ କରିଥିଲେ ।

...ପୂର୍ତ୍ତ, ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ...ମହାନ୍ତି ଯୁବ ସମାଜ ଦେଶପ୍ରୀତିର ଏହି ମହାନ୍ ମନ୍ତ୍ରର ଭୀଷ୍ମ ପ୍ରତିଜ୍ଞା ...ନେବା ଉଚିତ୍ ବୋଲି ପ୍ରକାଶ କରିଥିଲେ । ଦେଶର ସାମ୍ପ୍ରତିକ ...ସଂଗ୍ରାମୀ ଗତିକୁ ରୋଧ କରି ସ୍ୱାଧୀନତା ସଂଗ୍ରାମର ଇତିହାସ ...ଯୁବମାନଙ୍କର ପଥପ୍ରଦର୍ଶକ ହେଉ ବୋଲି ଶ୍ରୀ ମହାନ୍ତି ...ମତପୋଷଣ କରିଥିଲେ । ଶ୍ରୀ ମହାନ୍ତି ଶହୀଦମାନଙ୍କର ପ୍ରତି ...ହୃଦୟର ଉଚ୍ଛୁସିତ ଶ୍ରଦ୍ଧାଞ୍ଜଳି ମଧ୍ୟ ଅର୍ପଣ କରିଥିଲେ ।

...ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ମନ୍ମଥନାଥ ...ଦାସ ଦେଶ ପାଇଁ ଆତ୍ମୋତ୍ସର୍ଗ କରିଥିବା ଅଗଣିତ ସ୍ୱାଧୀନତା ...ସଂଗ୍ରାମୀଙ୍କ ଅମର କୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ବୋଲି ...ଘୋଷଣା କରିଥିଲେ । ଓଡ଼ିଶାର ପବିତ୍ର ଭୂମି "ଇରମ" ରେ ଭାରତ ...ଛାଡ଼ ଯଜ୍ଞର ପୂର୍ଣ୍ଣାହୁତି ହୋଇଥିଲା ବୋଲି ଶ୍ରୀ ଦାସ ପ୍ରକାଶ ...କରିଥିଲେ ।

...ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସମିତି ଯୁବ ଶାଖାର ...ସଭାପତି ଶ୍ରୀ ଭର୍ତ୍ତୃହରି ମହତାବ ରାଷ୍ଟ୍ର ଚିନ୍ତନ, ରାଷ୍ଟ୍ର ଆରାଧନାର ...ଜାତୀୟ ନୀତିକୁ ଯୁବକମାନେ ପାଥେୟ କଲେ ଆମର ସ୍ୱପ୍ନ ସାକାର ...ହୋଇପାରିବ ବୋଲି ପ୍ରକାଶ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନ ...ବେଳେ ଓଡ଼ିଶାରେ ଘଟିଥିବା ଅନେକ ଘଟଣାବଳୀ ଏବେ ମଧ୍ୟ ...ଲୋକ ଲୋଚନକୁ ଆସି ପାରି ନଥିବାରୁ ଏ ଦିଗରେ କାର୍ଯ୍ୟ ଅବ୍ୟାହତ ...ରଖିବାକୁ ସେ ପରାମର୍ଶ ଦେଇଥିଲେ ।

...ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସମିତି ଅଧ୍ୟକ୍ଷ ଶ୍ରୀ ବିଶ୍ୱନାଥ ...ପଣ୍ଡା ଏହି କାର୍ଯ୍ୟକ୍ରମରେ ସଭାପତିତ୍ୱ କରି ସ୍ୱାଧୀନତା ...ସଂଗ୍ରାମୀମାନଙ୍କ ପ୍ରତି ଭକ୍ତିଅର୍ଘ୍ୟ ଅର୍ପଣ କରିଥିଲେ । ଓଡ଼ିଶାରେ ...ଭାରତ ଛାଡ଼ ଆନ୍ଦୋଳନ ସମୟରେ ୬ ହଜାରରୁ ଅଧିକ କର୍ମୀ ...କାରାବରଣ କରିଥିବା, ୧୩୦ ଜଣ ଗୁଳି ମାଡ଼ ଖାଇଥିବା ବିଷୟ ...ଶ୍ରୀ ପଣ୍ଡା ବର୍ଣ୍ଣନା କରିଥିଲେ ।

...ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ସମିତିର ସାଧାରଣ ସେକ୍ରେଟାରୀ ...ଶ୍ରୀ ରାମପ୍ରସାଦ ମହାନ୍ତି "କର ବା ମର" ଏହି ସଂକଳ୍ପ ଆଜି ...ସମସ୍ତେ ନେବା ଉଚିତ୍ ବୋଲି ପ୍ରକାଶ କରିଥିଲେ । ଶ୍ରୀ ମହାନ୍ତି ...କାର୍ଯ୍ୟକ୍ରମ ଶେଷରେ ଉପସ୍ଥିତ ସମସ୍ତଙ୍କୁ ଧନ୍ୟବାଦ ଅର୍ପଣ ...କରିଥିଲେ । ଏହି ଉତ୍ସବାନୁଷ୍ଠାନରେ ବହୁ ସ୍ୱାଧୀନତା ସଂଗ୍ରାମୀ, ...ବିଶିଷ୍ଟ ସମାଜସେବୀ, ବରିଷ୍ଠ ଶିକ୍ଷାବିତ୍ ଓ ବହୁ ସମ୍ମାନାସ୍ପଦ ...ନାଗରିକ ଯୋଗଦାନ କରିଥିଲେ ।

## ନାରୀମାନଙ୍କୁ ସ୍ୱାମୀର ସମ୍ପତ୍ତିରେ ଅଧିକାର ମିଳିବା ଏକାନ୍ତ ଆବଶ୍ୟକ

—ମୁଖ୍ୟମନ୍ତ୍ରୀ

ନାରୀମାନଙ୍କୁ ଶୋଷଣ ଓ ନିର୍ଯ୍ୟାତନାରୁ ମୁକ୍ତ କରିବା ପାଇଁ ସେମାନଙ୍କୁ ସ୍ୱାମୀର ସମ୍ପତ୍ତିରେ ଅଧିକାର ମିଳିବା ଏକାନ୍ତ ଆବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଦୃଢ଼ ମତବ୍ୟକ୍ତ କରିଛନ୍ତି । ଏଥିପାଇଁ ହିନ୍ଦୁ ଉତ୍ତରାଧିକାର ଆଇନରେ ଆବଶ୍ୟକୀୟ ସଂଶୋଧନ ଆଣିବାକୁ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।

ଇତି ମଧ୍ୟରେ ମୁଖ୍ୟମନ୍ତ୍ରୀ ଆଦେଶ ପ୍ରଦାନ କରିଛନ୍ତି ଯେ, ସ୍କୁଲରେ ନାମ ଲେଖା ସମୟରେ ନାମଲେଖା ରେଜିଷ୍ଟରରେ ପିଲାର ବାପାଙ୍କ ନାମ ସହିତ ମା'ଙ୍କ ନାମ ମଧ୍ୟ ବାଧ୍ୟତା ମୂଳକ ଭାବେ ଦରଜ କରାଯିବ ଏବଂ ଆସନ୍ତା ବର୍ଷଠାରୁ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାର ପ୍ରମାଣ ପତ୍ରରେ ପିତା ଓ ମାତା ଉଭୟଙ୍କ ନାମ ଉଲ୍ଲେଖ ରହିବ । ମ୍ୟୁନିସିପାଲିଟି ଓ ଗ୍ରାମ ପଞ୍ଚାୟତର ଜନ୍ମ ରେଜିଷ୍ଟରରେ ମଧ୍ୟ ପିତାମାତା ଉଭୟଙ୍କ ନାମ ରହିବ ବୋଲି ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।

ଏସବୁ ସତ୍ତ୍ୱେ ମହିଳାମାନଙ୍କୁ ସ୍ୱାମୀର ସମ୍ପତ୍ତିରେ ଅଧିକାର ନମିଳିବା ପର୍ଯ୍ୟନ୍ତ ନାରୀମୁକ୍ତି ସମ୍ପର୍କରେ ଯେ କୌଣସି ଚିନ୍ତାଧାରା ସମ୍ପୂର୍ଣ୍ଣ ରୂପେ ନିରର୍ଥକ ହୋଇ ପଡ଼ିବ ବୋଲି ମୁଖ୍ୟମନ୍ତ୍ରୀ ଅନୁଭବ କରନ୍ତି ।

## ଭୟଙ୍କର ବନ୍ୟାରେ ବିପନ୍ନ ଜନସାଧାରଣଙ୍କୁ ଅକୁଣ୍ଠ ସାହାଯ୍ୟ ଓ ସହଯୋଗ ଦେବା ପାଇଁ ରାଜ୍ୟପାଳଙ୍କ ନିବେଦନ

ବାତ୍ୟା ଓ ପରେ ପରେ ପ୍ରବଳ ବର୍ଷା ଯୋଗୁଁ ରାଜ୍ୟର ଅଧିକାଂଶ ବଡ ଓ ସାନ ନଦୀମାନଙ୍କରେ ଆସିଥିବା ଭୟଙ୍କର ବନ୍ୟା ଦ୍ୱାରା ଓଡ଼ିଶାର ବିସ୍ତୀର୍ଣ୍ଣ ଅଞ୍ଚଳରେ ବିଶେଷକରି କଟକ, ପୁରୀ, ଗଞ୍ଜାମ, ଫୁଲବାଣୀ, କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର ଓ ବାଲେଶ୍ୱର ଜିଲ୍ଲାମାନଙ୍କରେ ପ୍ରଭୁତ କ୍ଷୟକ୍ଷତି ଓ ଧନଜୀବନ ହାନୀ ଘଟିଯାଇଥିବାରୁ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗଭୀର ଭାବେ ଦୁଃଖାଭିଭୂତ ଓ ଚିନ୍ତିତ ହୋଇପଡ଼ିଛନ୍ତି ।

ବନ୍ୟା ପ୍ରପୀଡ଼ିତ ଓ ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଶାର ଜନସାଧାରଣଙ୍କ ପ୍ରତି ତାଙ୍କର ଆନ୍ତରିକ ସମବେଦନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ଉଦ୍ଧାର ଓ ରିଲିଫ୍ ଯୋଗାଣ କାର୍ଯ୍ୟକ୍ରମର ପରିପୂରକ ଭାବେ ସାଧ୍ୟପର୍ଯ୍ୟନ୍ତ ସାହାଯ୍ୟ ଓ ସହଯୋଗ କରିବା ନିମନ୍ତେ ଆଗେଇ ଆସିବାକୁ ରାଜ୍ୟର ଓ ରାଜ୍ୟ ବାହାରେ ଥିବା ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବଦାନ୍ୟ ବ୍ୟକ୍ତି ବିଶେଷ ଓ ବେସରକାରୀ ଅନୁଷ୍ଠାନମାନଙ୍କୁ ରାଜ୍ୟପାଳ ଶ୍ରୀ ଶର୍ମା ନିବେଦନ କରିଛନ୍ତି । ଏପରି ଏକ ଦୁର୍ଦ୍ଦିନର ସନ୍ଧିସନ୍ଧି ମୁହୂର୍ତ୍ତରେ ଧୈର୍ଯ୍ୟହରା ନହୋଇ ଏକଜୁଟଭାବେ ଓ ଅଦମ୍ୟ ସାହସର ସହ ଏହି ପ୍ରାକୃତିକ ବିପର୍ଯ୍ୟୟକୁ ସମ୍ମୁଖୀନ ହେବାକୁ ରାଜ୍ୟପାଳ ଶ୍ରୀ ଶର୍ମା ରାଜ୍ୟର ସାହାସୀ ଜନସାଧାରଣଙ୍କୁ ପରାମର୍ଶ ଦେଇଛନ୍ତି ।

ସରକାରଙ୍କ ତରଫରୁ ବା ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ତରଫରୁ ପରିଚାଳିତ ହେଉଥିବା ଉଦ୍ଧାର ଓ ରିଲିଫ୍ ବଣ୍ଟନ

କାର୍ଯ୍ୟକ୍ରମରେ ଆନ୍ତରିକତାର ସହ ପୂର୍ଣ୍ଣ ସାହାଯ୍ୟ ଓ ସହଯୋଗ କରିବାକୁ ରାଜ୍ୟପାଳ ଜନସାଧାରଣଙ୍କୁ ମଧ୍ୟ ନିବେଦନ କରିଛନ୍ତି ।

## ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠ ପ୍ରତି ଶନିବାର ଦିନ କାର୍ଯ୍ୟ କରିବ

ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ପ୍ରତିଦିନ ସକାଳେ ଜନସାଧାରଣ ବିଭିନ୍ନ ଅଭିଯୋଗ ନେଇ ଆସୁଛନ୍ତି । ସମୟର ସ୍ୱଳ୍ପତା ଦୃଷ୍ଟିରୁ ଅନେକେ ଦେଖା ନପାଇ ଫେରିଯାଉଛନ୍ତି । ତେଣୁ ମୁଖ୍ୟମନ୍ତ୍ରୀ ସ୍ଥିର କରିଛନ୍ତି ଯେ ଅଗଷ୍ଟ ମାସ ୨୭ ତାରିଖଠାରୁ ଜନସାଧାରଣଙ୍କ ଆପତ୍ତି ଅଭିଯୋଗ ଶୁଣିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ସ୍ୱତନ୍ତ୍ର ଅଭିଯୋଗ ପ୍ରକୋଷ୍ଠ ଉଦ୍ୟାନ ମାର୍ଗ ସ୍ଥିତ ତାଙ୍କ ସରକାରୀ କାର୍ଯ୍ୟାଳୟରେ ପ୍ରତି ଶନିବାର ଦିନ ପୂର୍ବାହ୍ନ ୯ଟାଠାରୁ ୧୨ଟା ପର୍ଯ୍ୟନ୍ତ କାର୍ଯ୍ୟ କରିବ ଓ ବାସଭବନକୁ କେହି ଆସିବା ଆବଶ୍ୟକ ହେବ ନାହିଁ । ଜନସାଧାରଣଙ୍କ ଯଥାର୍ଥ ଓ ନିର୍ଦ୍ଦିଷ୍ଟ ଅଭିଯୋଗମାନ ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଉପସ୍ଥାପିତ କରିବା ପାଇଁ ଏହି ସୁବିଧା ଉପଯୋଗ କରିବାକୁ ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟ ପକ୍ଷରୁ ପରାମର୍ଶ ଦିଆଯାଇଛି । ସରକାରୀ କର୍ମଚାରୀମାନେ ଯଦି ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠକୁ ଆସିବାକୁ ଚାହାନ୍ତି, ତା' ହେଲେ ବିଭାଗୀୟ ବ୍ୟବସ୍ଥାର ପୂର୍ଣ୍ଣ ଉପଯୋଗ ପରେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଅନୁମତି ଆଣିବା ଆବଶ୍ୟକ ହେବ ।

## ସରକାରୀ କର୍ମଚାରୀମାନେ ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଆପତ୍ତି ଅଭିଯୋଗ ଉପସ୍ଥାପିତ କରିବା ପୂର୍ବରୁ ବିଭାଗୀୟ ବ୍ୟବସ୍ଥାର ଉପଯୋଗ କରନ୍ତୁ

ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ଓ ସରକାରୀ ଦପ୍ତରରେ ସାକ୍ଷାତ କରି ଅଭିଯୋଗ ଜଣାଇବା ପାଇଁ ସାଧାରଣ ଲୋକଙ୍କ ସହିତ ଅନେକ ସରକାରୀ କର୍ମଚାରୀ ମଧ୍ୟ ଆସୁଥିବା ଦେଖାଯାଉଛି ।

ସରକାରୀ କର୍ମଚାରୀମାନଙ୍କ ଅଭିଯୋଗ ଶୁଣାଣି ପାଇଁ ବିଭାଗୀୟ ବ୍ୟବସ୍ଥାମାନ ରହିଛି । ପ୍ରତ୍ୟେକ ଦପ୍ତରରେ ଶନିବାର ଦିନ ଅଭିଯୋଗ ଶୁଣାଣି ହୁଏ । ଯଥାର୍ଥ ଅଭିଯୋଗ ଓ ସମସ୍ୟାକୁ ସରକାରୀ କର୍ମଚାରୀମାନେ ନିଜ ଦପ୍ତରର ମୁଖ୍ୟଙ୍କ ନିକଟରେ ଉପସ୍ଥାପିତ କରିବା ବାଞ୍ଛନୀୟ । ଏଥିରୁ କିଛି ଫଳ ନମିଳିଲେ, ଉପରିସ୍ଥ କର୍ମକର୍ତ୍ତାଙ୍କ ଦୃଷ୍ଟି ଆକର୍ଷଣ କରାଯିବାର ବ୍ୟବସ୍ଥା ରହିଛି । ଏହାପରେ ମଧ୍ୟ ବିଭାଗୀୟ ମୁଖ୍ୟ, ସଚିବ ଓ ବିଭାଗୀୟ ମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠ ରହିଛି । ସର୍ବୋପରି, ଅଭିଯୋଗ ଶୁଣାଣି ଦାୟିତ୍ୱରେ ସ୍ୱତନ୍ତ୍ର ଭାବେ ଜଣେ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ମଧ୍ୟ ଅଛନ୍ତି ।

ଏସବୁ ବ୍ୟବସ୍ଥା ସତ୍ତ୍ୱେ, ଯଦି କୌଣସି ସରକାରୀ କର୍ମଚାରୀ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବାକୁ ଚାହାନ୍ତି, ସେ ନିଜ ନାମ, ପଦବୀ ଓ ଠିକଣା ସହିତ ଦପ୍ତରର ମୁଖ୍ୟ, ବିଭାଗୀୟ ମୁଖ୍ୟ, ଶାସନ ସଚିବ, ବିଭାଗୀୟ ମନ୍ତ୍ରୀ ଓ ଅଭିଯୋଗ ମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠରେ କେବେ ଅଭିଯୋଗ ପତ୍ର ଦାଖଲ କରିଥିଲେ ଏବଂ ତା'ର ଫଳାଫଳ ସମ୍ପର୍କୀୟ ବିବରଣୀ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରକୁ ପଠାଇବା ପାଇଁ ପରାମର୍ଶ ଦିଆଯାଉଛି । ଏପରି ସାକ୍ଷାତକାରର ଆବଶ୍ୟକତା ଥିଲେ, ସେଥିପାଇଁ ତାରିଖ ଧାର୍ଯ୍ୟ କରାଯାଇ ଅଭିଯୋଗକାରୀଙ୍କୁ ଜଣାଇ ଦିଆଯିବ ଏବଂ ଯୁକ୍ତିଯୁକ୍ତ ଅଭିଯୋଗ ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟ ପକ୍ଷରୁ ସୂଚନା ଦିଆଯାଇଛି ।

## ମାହାଙ୍ଗା ଅଞ୍ଚଳର ବହୁ ଆକାଂକ୍ଷିତ ନୂତନ ପୋଲ ଉଦ୍‌ଘାଟିତ

ମାହାଙ୍ଗା ଅଞ୍ଚଳର ବହୁ ଆକାଂକ୍ଷିତ ସାଲେପୁର, ଛତିଆ ରୋଡ଼ ଚୁଆଁପାଳଠାରେ ପଟ୍ଟାମୁଣ୍ଡାଇ କେନାଲ ଉପରେ ପୂର୍ତ୍ତ ବିଭାଗ ଦ୍ୱାରା ୧୬ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ଏକ ପକ୍କାପୋଲକୁ ସମ୍ପ୍ରତି ରାଜ୍ୟ କ୍ରୀଡ଼ା, ସଂସ୍କୃତି, ଯୁବସେବା ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ଘାଟନ କରିଛନ୍ତି । ଖୁବ୍ କମ୍ ସମୟ ମଧ୍ୟରେ ନିର୍ମିତ ଏହି ପୋଲ ଉଦ୍‌ଘାଟିତ ହେବା ଫଳରେ ଏ ଅଞ୍ଚଳର ବହୁଦିନର ଅଭାବ ପୂରଣ ହୋଇପାରିଛି ।

ଏହା ବ୍ୟତୀତ ମନ୍ତ୍ରୀ ଶ୍ରୀ କର ଚୁଆଁପାଳ ନିକଟସ୍ଥ ଅଳିଯୋଡ଼ାଠାରେ ନିର୍ମିତ ମାହାଙ୍ଗା ତହସିଲ୍ ଅଫିସ୍ ମଧ୍ୟ ଉଦ୍‌ଘାଟନ କରିଥିଲେ । ଏହି ଉପଲକ୍ଷେ ମାହାଙ୍ଗା ପଞ୍ଚାୟତ ସମିତି ଚେୟାରମ୍ୟାନ ଶ୍ରୀ କିଶୋର ଚନ୍ଦ୍ର ସିଂହଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ମନ୍ତ୍ରୀ ଶ୍ରୀ କର ଉଦ୍‌ବୋଧନ ଦେଇ କହିଲେ ଯେ ୬ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ଏହି ତହସିଲ୍ କାର୍ଯ୍ୟାଳୟ ଗତ ଅଗଷ୍ଟ ୧୭ ତାରିଖରୁ କାର୍ଯ୍ୟ ଆରମ୍ଭ କରିଛି । ଅଞ୍ଚଳବାସୀ ଏହାର ସୁଯୋଗ ଉପଭୋଗ କରିବେ ବୋଲି ସେ ଆଶା ପୋଷଣ କରିଥିଲେ ।

ଉକ୍ତ ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ନେତ୍ରାନନ୍ଦ ଦାସ ସମେତ ପୂର୍ତ୍ତ ବିଭାଗ ନିର୍ବାହୀ ଯନ୍ତ୍ରୀ, ନବ ନିର୍ବାଚିତ ସରପଞ୍ଚ, ପଞ୍ଚାୟତ ସମିତି ସଭ୍ୟବୃନ୍ଦ ଏବଂ ତହସିଲ୍‌ଦାର ଓ ତାଙ୍କ ଅଫିସ୍‌ର ସମସ୍ତ କର୍ମଚାରୀ ଉପସ୍ଥିତ ଥିଲେ ।

## ଲକ୍ଷ୍ମୀ ସାଗର ପୁଷ୍କରିଣୀର ଉନ୍ନୟନ ପାଇଁ ଆଲୋଚନା

ଭୁବନେଶ୍ୱରରେ ଥିବା ଚିନ୍ତାମଣିଶ୍ୱର ମନ୍ଦିର ନିକଟବର୍ତ୍ତୀ ଲକ୍ଷ୍ମୀ ସାଗର ପୁଷ୍କରିଣୀର ଉନ୍ନୟନ ସମ୍ପର୍କରେ ଏକ ଆଲୋଚନା ବୈଠକ ଗତ ଅଗଷ୍ଟ ୧୦ ତାରିଖ ଦିନ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ ଅଧ୍ୟକ୍ଷତାରେ ସଚିବାଳୟଠାରେ ଅନୁଷ୍ଠିତ ହୋଇଥିଲା । କୋଡ଼ିଏ ଏକର ପରିମିତ ଏହି ପୁଷ୍କରିଣୀରେ ମତ୍ସ୍ୟ ଚାଷ କରିବା ସଙ୍ଗେ ସଙ୍ଗେ ଏହାକୁ ଏକ ଜଳ କ୍ରୀଡ଼ା ବିହାରରେ ପରିଣତ କରିବା ପାଇଁ ନିଷ୍ପତ୍ତି କରାଯାଇଛି । ଜଳ କ୍ରୀଡ଼ା ବିହାର ପାଇଁ କ୍ରୀଡ଼ା ଓ ପର୍ଯ୍ୟଟନ ବିଭାଗ ଏବଂ ମତ୍ସ୍ୟ ଚାଷ ପାଇଁ ମତ୍ସ୍ୟ ବିଭାଗ ଆବଶ୍ୟକ ପଦକ୍ଷେପ ନେବାକୁ ସ୍ଥିର କରାଯାଇଛି । ଭୁବନେଶ୍ୱର ଉନ୍ନୟନ ସଂସ୍ଥା ଓ ପୌର ପରିଷଦଙ୍କ ମିଳିତ ଉଦ୍ୟମରେ ବିଦ୍ୟୁତ୍ ଆଲୋକ ଖଞ୍ଜାଯାଇ ଏଠାରେ ଏକ ଆକର୍ଷଣୀୟ ଉଦ୍ୟାନ କରିବାକୁ ସ୍ଥିର ହୋଇଛି । ଦୁଇମାସ ମଧ୍ୟରେ ମତ୍ସ୍ୟ ବିଭାଗ ତରଫରୁ ଏହି ପୁଷ୍କରିଣୀରୁ ଦଳ ସଫା କରାଯିବ ।

ଏହି ଆଲୋଚନା ବୈଠକରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗ ଶାସନ ସଚିବ ଶ୍ରୀ ସୁ: ଶରତଚନ୍ଦ୍ର, କ୍ରୀଡ଼ା, ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ମି...

ଯୋଗ ପ୍ରଶାସନ ନିର୍ଦ୍ଦେଶକ ଶ୍ରୀ ବି.କେ. ମିଶ୍ର, ବି.ଡି.ଏ.ର ପ୍ଲାନିଙ୍ଗ କନ୍‌ସଲଟାଣ୍ଟ ଅବଦୁଲ୍ ହମିଦ୍, ପୌରପାଳିକାର କାର୍ଯ୍ୟ ନିର୍ବାହୀ ଅଧିକାରୀ ଶ୍ରୀ ଶଶିଭୂଷଣ ମିଶ୍ର ଏବଂ ଅତିରିକ୍ତ ଉପ ଜିଲ୍ଲାପାଳ ଶ୍ରୀମତୀ ଲବଙ୍ଗଲତା ରାୟ ପ୍ରମୁଖ ଯୋଗ ଦେଇଥିଲେ ।

## ଢେଙ୍କାନାଳ ଜିଲ୍ଲାରେ ପାଞ୍ଚୋଟି ନିମ୍ନସେତୁ ନିର୍ମିତ ହେବ

ଢେଙ୍କାନାଳ ଜିଲ୍ଲାରେ ୫ଟି ନିମ୍ନସେତୁ ନିର୍ମାଣ ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ମୋଟ୍ ୧୩ କୋଟି ୯ ଲକ୍ଷ ୪୫ ହଜାର ୮୦୦ ଟଙ୍କାର ପ୍ରଶାସନିକ ମଞ୍ଜୁରୀ ଦିଆଯାଇଥିବା ବିଭାଗୀୟ ସୂତ୍ରରୁ ପ୍ରକାଶ । ସେଗୁଡ଼ିକର ନିର୍ମାଣ କାର୍ଯ୍ୟ ଚଳିତ ଆର୍ଥିକ ବର୍ଷରୁ ଆରମ୍ଭ ହେବ ।

ଅନୁଗୁଳ-ଏକଘରିଆ ଏଫ୍.ସି.ଆଇ.-ତାଳଚେର ରାସ୍ତାର ନନ୍ଦିରା ନଦୀ ଉପରେ ନିମ୍ନସେତୁ ନିର୍ମାଣ ପାଇଁ ୪୦ ଲକ୍ଷ ୭୮ ହଜାର ୮୦୦ ଟଙ୍କା, ଠାକୁରଗଡ଼-ପେଗସ୍ତମାଲ ରାସ୍ତାରେ ବାଉଟିନାଳ ଉପରେ ନିମ୍ନସେତୁ ନିର୍ମାଣ ପାଇଁ ୩୩ ଲକ୍ଷ ୨୫ ହଜାର ଟଙ୍କା, ଖଜୁରିଆ-ଭାଗିରଥୀପୁର ରାସ୍ତାର କଜାବିଲା ନାଳ ଉପରେ ନିମ୍ନସେତୁ ନିର୍ମାଣ ପାଇଁ ୨୨ ଲକ୍ଷ ୧୪ ହଜାର ୧୦୦ ଟଙ୍କା, କେଳୀପାଟ-ମହୀଧରପୁର ରାସ୍ତାର କାଳିଯୋଡ଼ି ନାଳ ଉପରେ ନିମ୍ନସେତୁ ନିର୍ମାଣ ପାଇଁ ୨୧ ଲକ୍ଷ ୯୬ ହଜାର ଟଙ୍କା ଏବଂ ହିନ୍ଦିଆ-ବନ୍‌ଲୋର ରାସ୍ତାରେ ଏକ ନିମ୍ନସେତୁ ନିର୍ମାଣ ପାଇଁ ୧୭ ଲକ୍ଷ ୩୧ ହଜାର ୯୦୦ ଟଙ୍କା ବ୍ୟୟ ଅଟକଳର ବିଭାଗୀୟ ପ୍ରଶାସନିକ ମଞ୍ଜୁର ଦିଆଯାଇଥିବା, ବିଭାଗୀୟ ଶାସନ ସଚିବ ଶ୍ରୀ ଅଜିତ୍ କୁମାର ତ୍ରିପାଠୀ ପ୍ରକାଶ କରିଛନ୍ତି ।

## କୋମଣ୍ଡ ନୂତନ ପଞ୍ଚାୟତ ଗୃହ ଓ ମହିଳା ସମିତି ଉଦ୍‌ଘାଟିତ

ଗତ ଅଗଷ୍ଟ ୧୮ ତାରିଖରେ ରାଜ୍ୟ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରାଙ୍କ ଦ୍ୱାରା ଓଡ଼ଗାଁ ବ୍ଲକ୍ ଅନ୍ତର୍ଗତ କୋମଣ୍ଡ ପଞ୍ଚାୟତର ନୂତନ ଗୃହ ଓ ମହିଳା ସମିତି ଉଦ୍‌ଘାଟିତ ହୋଇଯାଇଛି । ଏହି ଉପଲକ୍ଷେ ଅନୁଷ୍ଠିତ ସଭାରେ ମନ୍ତ୍ରୀ ଶ୍ରୀ ବେହେରା ଉଦ୍‌ବୋଧନ ଦେଇ କହିଲେ ଯେ ଆମ ରାଜ୍ୟରେ ଶତକଡ଼ା ୮୫ ଭାଗରୁ ଅଧିକ ଲୋକ ଗ୍ରାମାଞ୍ଚଳରେ ବାସ କରୁଛନ୍ତି । ସେମାନଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତି ନିମନ୍ତେ ଗ୍ରାମପଞ୍ଚାୟତମାନଙ୍କ ଦ୍ୱାରା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଓ ଉନ୍ନୟନ ମୂଳକ କାର୍ଯ୍ୟ କାର୍ଯ୍ୟକାରୀ ହେଉଛି । ନୂଆ ଆଇନ୍ ଅନୁସାରେ ମହିଳାମାନଙ୍କୁ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିମାନଙ୍କରେ ପ୍ରତିନିଧିତ୍ୱ କରିବା ପାଇଁ ସୁଯୋଗ ଦିଆଯାଉଛି । ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟ ପାଇଁ ମିଳୁଥିବା ଅର୍ଥର ସଦୁପଯୋଗ କରିବା ଦିଗରେ ସମସ୍ତ ସଭ୍ୟ ଓ ଜନସାଧାରଣ ଦୃଷ୍ଟି ଦେବାପାଇଁ ଶ୍ରୀ ବେହେରା କହିଥିଲେ ।

ଏହି ସଭାରେ ପଞ୍ଚାୟତ ସମିତି ଚେୟାରମ୍ୟାନ କୁମାରୀ ସ୍ୱର୍ଣ୍ଣଲତା ଦାସ ଓ ସ୍ଥାନୀୟ ସରପଞ୍ଚ ସମେତ ପଞ୍ଚାୟତ ଓ ସମିତି ସଭ୍ୟମାନେ ଯୋଗ ଦେଇ ଏହି ଅଞ୍ଚଳର ବିଭିନ୍ନ ସମସ୍ୟା ବିଷୟରେ କହିଥିଲେ । ଅନ୍ୟମାନଙ୍କ ମଧ୍ୟରେ ନୟାଗଡ଼ ସବ୍-କଲେକ୍ଟର, ଓଡ଼ଗାଁ ବି.ଡି.ଓ. ଓ ଅନ୍ୟ କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ ।

## ଅରୂପାନନ୍ଦ ମିଶନ ଦ୍ୱାରା ପ୍ରତିଷ୍ଠିତ କର୍କଟ ନିରୂପଣ କେନ୍ଦ୍ର ରାଜ୍ୟପାଳ ଉଦ୍‌ଘାଟନ କଲେ

ପରିବେଶର ଅତ୍ୟଧିକ ପ୍ରଦୂଷଣ ସହ କଳୁଷିତ ଶରୀର ଓ ମନର ମାତାଧିକ ଚାପ ଯୋଗୁଁ ମାନବ ସମାଜ ଆଜି ବହୁବିଧ ମାରାତ୍ମକ ବ୍ୟାଧିରେ ଉତ୍ପୀଡ଼ିତ ହେଉଥିବାରୁ ଶୃଙ୍ଖଳିତ ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଯାପନ କରିବାକୁ ଯୁବ ସମାଜ ଗଭୀର ଭାବେ ଚିନ୍ତା କରୁ ବୋଲି ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଏଠାରେ ପରାମର୍ଶ ଦେଇଛନ୍ତି ।

ଭୁବନେଶ୍ୱର ଉପକଣ୍ଠରେ ଅବସ୍ଥିତ ବରମୁଣ୍ଡା ହାଉସିଂ କଲୋନୀଠାରେ ସ୍ୱାମୀ ଅରୂପାନନ୍ଦ ମିଶନ ଆନୁକୂଲ୍ୟରେ ପ୍ରତିଷ୍ଠିତ କର୍କଟ ନିରୂପଣ କେନ୍ଦ୍ରକୁ ସମ୍ପ୍ରତି ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରିଛନ୍ତି ।

ବିଶୃଙ୍ଖଳିତ ମାନବର ଐଶ୍ୱର୍ଯ୍ୟ, ଭୋଗ, ବିଳାସ ପ୍ରତି ତୃଷ୍ଣା ଏତେ ଉଗ୍ରରୂପ ଧାରଣ କରିଛି ଯେ ଆମର ଋଷି, ମୁନୀ ଓ ମହାମାନବମାନଙ୍କ ଦ୍ୱାରା ସୁଖ ଶାନ୍ତିରେ ଜୀବନ ଯାପନ ନିମନ୍ତେ ପ୍ରଦର୍ଶିତ ମାର୍ଗ ପ୍ରତି କାହାରି ଦୃଷ୍ଟି ପଡୁ ନଥିବା ଏକ ପରିତାପର ବିଷୟ ବୋଲି ଶ୍ରୀ ଶର୍ମା ବର୍ଣ୍ଣନା କରି କହିଛନ୍ତି ଯେ ଏହାଦ୍ୱାରା ନୀତି, ନିୟମ, ମର୍ଯ୍ୟାଦା ଓ ଉଚ୍ଚ ମୂଲ୍ୟବୋଧ ଧୀରେ ଧୀରେ ନିମ୍ନଗାମୀ ହୋଇ ମାନସିକ ସନ୍ତୁଳନ ନଷ୍ଟ କରିଦେଉଛି । ଜନ ଜୀବନର ଏହି ତାପ ଓ ସନ୍ତାପରେ ସନ୍ଥ ସାଧୁଙ୍କର ମନ ପୀଡ଼ିତ ହୋଇଥାଏ ଏବଂ ଏହାର ଶମନ ଓ ଶାନ୍ତି ପାଇଁ ସେମାନଙ୍କ ଅନ୍ତରାତ୍ମାରେ ଆଲୋଡ଼ନ ସୃଷ୍ଟି ହୋଇଥାଏ । ଉକ୍ତ ମାନବୀୟ ପୀଡ଼ାର ନିରାକରଣ ପାଇଁ ଆଜିର ଏହି ଅନୁଷ୍ଠାନ ଅଭିପ୍ରେତ ବୋଲି ରାଜ୍ୟପାଳ କହିଥିଲେ । ପୀଡ଼ିତ ସମାଜ ନିମନ୍ତେ ଏହା ଶୁଭଙ୍କରୀ ହେଉ ବୋଲି ଶ୍ରୀ ଶର୍ମା ଆଶା ପ୍ରକାଶ କରିଥିଲେ ।

ସ୍ୱାମୀ ଅରୂପାନନ୍ଦଜୀ ତାଙ୍କ ଅଭିଭାଷଣରେ ସଂସ୍କୃତି ସମ୍ପନ୍ନ ଆମ ଦେଶର ପ୍ରଦୂଷିତ ପରିବେଶ ଓ ଦୂଷିତ ମାନସିକ ସ୍ଥିତି ଯୋଗୁ ମାନବ ସମାଜକୁ ଅତ୍ୟଧିକ ପୀଡ଼ା ଭୋଗ କରୁଛି ବୋଲି ପ୍ରକାଶ କରି ଏହି ମିଶନ ପ୍ରକୃତିର ସୁରକ୍ଷା ପାଇଁ ଅଙ୍ଗୀକାର ବଦ୍ଧ ଓ ସମସ୍ତଙ୍କର ସହଯୋଗ ଓ ସାହାଯ୍ୟ ବିନା ଏହା ସମ୍ଭବ ନୁହେଁ ବୋଲି କହିଥିଲେ ।

ପେନସନ୍ ଓ ଜନଅଭିଯୋଗ ମନ୍ତ୍ରୀ ଡଃ ପ୍ରସନ୍ନ କୁମାର ପାଟଶାଣୀ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ତ୍ରିନାଥ ନାୟକ, କର୍କଟ ଓ ହୃଦରୋଗ ନିରୂପଣ କେନ୍ଦ୍ରର ଅଧ୍ୟକ୍ଷ ଶ୍ରୀ ଏସ୍. ଏମ୍. ପଟ୍ଟନାୟକ, ପାର୍ଲ୍ୟାମେଣ୍ଟ ସଦସ୍ୟ ଶ୍ରୀ ଶିବାଜୀ ପଟ୍ଟନାୟକ ଓ ମୁକ୍ତ ସମ୍ପାଦକ ଶ୍ରୀ ଅଭିଷେକ ତ୍ରିପାଠୀ ଏହି ଉଦ୍‌ଘାଟନୀ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି କର୍କଟ ପରି ମାରାତ୍ମକ ରୋଗର ସମ୍ପୂର୍ଣ୍ଣ ନିରାକରଣ ଏଯାଏ ସମ୍ଭବ ହୋଇ ପାରି ନଥିବାରୁ କର୍କଟ ରୋଗର ଆଶୁ ନିରୂପଣ କରାଯାଇ ପାରିଲେ ବହୁ ଜୀବନ ରକ୍ଷା କରାଯାଇ ପାରିବ ବୋଲି ମତ ପ୍ରକାଶ କରିଥିଲେ । କର୍କଟ ରୋଗର କାରଣ ନିରୂପଣ ଓ ସମ୍ପୂର୍ଣ୍ଣ ନିରାକରଣ ପାଇଁ ଗବେଷଣା କାର୍ଯ୍ୟ ଏଠାରେ ଆରମ୍ଭ କରିବାକୁ ପରାମର୍ଶମାନ ମଧ୍ୟ ଦେଇଥିଲେ ।

## ଆଇ:ଆର୍:ଡି:ପି:ରେ ୧୧,୯୦୧ଟି ପରିବାର ଉପକୃତ

ଗତ ଜୁଲାଇ ମାସରେ ଓଡ଼ିଶାରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (ଆଇ:ଆର୍:ଡି:ପି:) ଅଧୀନରେ ମୋଟ୍ ୩,୪୯୩ଟି ପରିବାର ଉପକୃତ ହୋଇଛନ୍ତି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷ ଆରମ୍ଭରୁ ଅର୍ଥାତ୍ ଗତ ଅପ୍ରେଲ ମାସଠାରୁ ଜୁଲାଇ ମାସ ଶେଷ ପର୍ଯ୍ୟନ୍ତ ଚାରିମାସ ମଧ୍ୟରେ ମୋଟ୍ ୧୧,୯୦୧ଟି ଦରିଦ୍ର ପରିବାର ଉକ୍ତ କାର୍ଯ୍ୟକ୍ରମରେ ଉପକୃତ ହୋଇଛନ୍ତି ବୋଲି ଗତ ଜୁଲାଇ ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାପଡ଼ିଛି ।

ସେହିପରି ଜବାହର ରୋଜଗାର ଯୋଜନାରେ ରାଜ୍ୟର ଗ୍ରାମାଞ୍ଚଳରେ ଯେଉଁସବୁ ଶ୍ରମଭିତ୍ତିକ କାର୍ଯ୍ୟ କରାଯାଉଛି, ତଦନୁଯାୟୀ ଚଳିତ ଆର୍ଥିକ ବର୍ଷର ଆରମ୍ଭରୁ ଗତମାସ ଶେଷ ସୁଦ୍ଧା ମୋଟ୍ ୧ କୋଟି ୨୯ ଲକ୍ଷ ୫୯ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଗ୍ରାମାଞ୍ଚଳ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଛି । କେବଳ ଗତମାସରେ ସୃଷ୍ଟି ହୋଇଥିବା ୨୯ ଲକ୍ଷ ୭୧ ହଜାର ଶ୍ରମ ଦିବସ ଏହାର ଅନ୍ତର୍ଭୁକ୍ତ । ଏ କ୍ଷେତ୍ରରେ ଚଳିତ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଗତମାସ ଶେଷ ସୁଦ୍ଧା ଶତକଡ଼ା ୩୩ ଭାଗ ସଫଳତା ହାସଲ କରାଯାଇ ପାରିଛି ବୋଲି ଉକ୍ତ ବିବରଣୀରୁ ପ୍ରକାଶ ।

ଚଳିତ ଆର୍ଥିକ ବର୍ଷର ପ୍ରଥମ ଚାରିମାସ ମଧ୍ୟରେ ରାଜ୍ୟରେ ମୋଟ୍ ୩୪୧ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ପ୍ରତିଷ୍ଠା କରାଯାଇଛି । କେବଳ ଗତମାସରେ ପ୍ରତିଷ୍ଠା କରାଯାଇଥିବା ୧୦୨ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ଏହାର ଅନ୍ତର୍ଭୁକ୍ତ ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

## କେନ୍ଦୁଝର ଜିଲ୍ଲାରେ ୫ଟି କ୍ଷୁଦ୍ର ପ୍ରକଳ୍ପ ନିର୍ମିତ ହେବ

କେନ୍ଦୁଝର ଜିଲ୍ଲାରେ ୫ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ମିତ ହେବ । ପୁନରୁଦ୍ଧାର ସହ ପ୍ରକଳ୍ପଗୁଡ଼ିକ ନିର୍ମାଣ ପାଇଁ ୧ କୋଟି ୩୬ ଲକ୍ଷ ୩୪ ହଜାର ୭୫୧ ଟଙ୍କାର ପ୍ରଶାସନିକ ମଞ୍ଜୁରୀ ଦିଆଯାଇଥିବା ଗ୍ରାମ୍ୟ ଉନ୍ନୟନ ବିଭାଗ ସୂତ୍ରରୁ ପ୍ରକାଶ ।

ଗୋବରା ପ୍ରକଳ୍ପ ପାଇଁ ୭୫ ଲକ୍ଷ ୪ ହଜାର ୬୦୦ ଟଙ୍କା, ତାରାଡ଼ିଆ ପ୍ରକଳ୍ପ ପାଇଁ ୨୨ ଲକ୍ଷ ୧୦ ହଜାର ୧୦୦ ଟଙ୍କା, ଝିଞ୍ଜୁଡ଼ୋଭା ପ୍ରକଳ୍ପ ପାଇଁ ୧୭ ଲକ୍ଷ ୯୧ ହଜାର ଟଙ୍କା, ରଙ୍ଗମାଟିଆ ପ୍ରକଳ୍ପ ପାଇଁ ୧୬ ଲକ୍ଷ ୩୮ ହଜାର ୭୫୧ ଟଙ୍କା ଓ ବଡ଼ବିଲ୍ ପ୍ରକଳ୍ପ ପାଇଁ ୪ ଲକ୍ଷ ୯୭ ହଜାର ୩୦୦ ଟଙ୍କା ମଞ୍ଜୁର କରାଯାଇଥିବା ବିଭାଗୀୟ ଶାସନ ସଚିବ ଶ୍ରୀ ଅଜିତ୍ କୁମାର ତ୍ରିପାଠୀଙ୍କଠାରୁ ପ୍ରକାଶ ।

ଏହି ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟ ଚଳିତ ଆର୍ଥିକ ବର୍ଷରେ ଆରମ୍ଭ ହେବ ।

## ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ କାର୍ଯ୍ୟକ୍ରମ କ୍ଷେତ୍ରରେ ଅଗ୍ରଗତି

ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଅନୁଯାୟୀ ଗତ ଜୁ[illegible] ମାସରେ ୩,୬୭୭ ଜଣ ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କରିଛନ୍ତି । ସେମାନଙ୍କ ମଧ୍ୟରେ ଅସ୍ତ୍ରୋପଚାର କରିଥିବା ୩,୫୭୫ ଜଣ ମହିଳା ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ସନ୍ତାନ ଜନ୍ମ ସମୟ ବୃଦ୍ଧି ଉଦ୍ଦେଶ୍ୟରେ ୬,୬୨୫ ଜଣ ମହିଳା "ଲୁପ୍" ଗ୍ରହଣ କରିଥିବା ବେଳେ ମହିଳାଙ୍କ ମଧ୍ୟରେ ୪୧,୩୯୫ଟି ଗର୍ଭ ନିରୋଧକ ବଟିକା ବଣ୍ଟନ କରାଯାଇଛି ବୋଲି ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ସମୀକ୍ଷା ବିବରଣୀରୁ ଜଣାଯାଇଛି ।

ଉକ୍ତ ମାସରେ ବିଭିନ୍ନ ରୋଗ ପ୍ରତିଷେଧକ ବ୍ୟବସ୍ଥା ସୁଦ୍ଧା ୪୬,୯୫୧ ଜଣ ଗର୍ଭବତୀ ମହିଳାଙ୍କୁ ଟି:ଟି:, ୩୫,୦୯୩ ଜଣ ଶିଶୁଙ୍କୁ ପୋଲିଓ, ୪୪,୫୩୦ ଜଣ ଶିଶୁଙ୍କୁ ବି:ସି:ଜି: ଓ ୨୯,୧୭୭ ଜଣ ଶିଶୁଙ୍କୁ ମିଳିମିଳା ଟିକା ଦିଆଯାଇଛି । ସେହିପରି ପାଞ୍ଚବର୍ଷ ବୟସ୍କ ୫୦,୨୪୬ ଜଣ ପିଲାଙ୍କୁ ଡି:ଟି:, ୧୦ ବର୍ଷ ବୟସ୍କ ୩୫,୦୦୧ ଜଣ ପିଲାଙ୍କୁ ଟି:ଟି: ଏବଂ ୧୬ ବର୍ଷ ବୟସ୍କ ୨୩,୯୭୪ ଜଣ ପିଲାଙ୍କୁ ଟି:ଟି: ଦିଆଯାଇଛି ।

ପୁଷ୍ଟିକର ଖାଦ୍ୟ ଅଭାବଜନିତ ରକ୍ତହୀନତା ରୋଗରେ ପଡ଼ିଥିବା ୧ ଲକ୍ଷ ୩୬ ହଜାର ୧୧୦ ଜଣ ମହିଳା ଏବଂ ୧ ଲକ୍ଷ ୫୯ ହଜାର ୨୨୨ ଜଣ ଶିଶୁଙ୍କୁ ଚିକିତ୍ସା କରାଯାଇ ଉପକୃତ କରାଯିବା ସଙ୍ଗେ ସଙ୍ଗେ ୨ ଲକ୍ଷ ୮୦ ହଜାର ୧୮୧ ଜଣ ଶିଶୁଙ୍କୁ ଭିଟାମିନ୍ 'କ' ବଟିକା ବଣ୍ଟନ କରାଯାଇଛି ।

## ଶ୍ରୀମନ୍ଦିର ଗର୍ଭଗୃହ ଛାତରୁ ପଥର ଖସିବା ଘଟଣାରେ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବେଗ ଓ ପ୍ରତିବିଧାନ ପାଇଁ ପ୍ରଧାନମନ୍ତ୍ରୀଙ୍କୁ ଚିଠି

ପୁରୀ ଶ୍ରୀମନ୍ଦିରର ଗର୍ଭଗୃହ ଛାତ ଉପରୁ ଖଣ୍ଡେ ବଡ଼ ପଥର ଖସି ରତ୍ନ ସିଂହାସନ ନିକଟରେ ପଡ଼ିଥିବା ଘଟଣାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଗଭୀର ଉଦ୍‌ବେଗ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହାର ପ୍ରତିବିଧାନ ପାଇଁ ତୁରନ୍ତ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥାର ଏକ ବିଶେଷଜ୍ଞଦଳକୁ ପୁରୀ ପଠାଇବା ପାଇଁ ପ୍ରଧାନମନ୍ତ୍ରୀ ଶ୍ରୀ ପି: ଭି: ନରସିଂହ ରାଓଙ୍କ ନିକଟକୁ ଏକ ପତ୍ର ଲେଖି ଅନୁରୋଧ ଜଣାଇଛନ୍ତି ।

ଏହି ଚିଠିରେ ମୁଖ୍ୟମନ୍ତ୍ରୀ ଦର୍ଶାଇଛନ୍ତି ଯେ ସମ୍ପ୍ରତି ପ୍ରାୟ ୨ କି: ଓଜନ ବିଶିଷ୍ଟ ଏକ ପ୍ରସ୍ତରଖଣ୍ଡ ଜଗନ୍ନାଥ ମନ୍ଦିରର ମୁଖ୍ୟ ମନ୍ଦିର ଛାତରୁ ଖସି ଶ୍ରୀ ବଳଭଦ୍ରଙ୍କ ବିଗ୍ରହ ସାମନାରେ ପଡ଼ିଥିଲା । ଏହା ଫଳରେ ଶ୍ରୀଜୀଉମାନଙ୍କ ଦୈନନ୍ଦିନ ନୀତିରେ ଘୋର ବ୍ୟାଘାତ ସୃଷ୍ଟି ହୋଇଛି ଏବଂ ହଜାର ହଜାର ଭକ୍ତ ଦର୍ଶନରୁ ବଞ୍ଚିତ ହେଉଛନ୍ତି ।

ଏହି କ୍ଷତିର ଆକଳନ କରିବା ସଙ୍ଗେ ସଙ୍ଗେ ତୁରନ୍ତ ମରାମତି କାର୍ଯ୍ୟ ଆରମ୍ଭ ଦିଗରେ ପଦକ୍ଷେପ ନେବାକୁ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥାର ମହାନିର୍ଦ୍ଦେଶକଙ୍କ ନେତୃତ୍ୱରେ ଏକ ବିଶେଷଜ୍ଞଦଳ ପୁରୀ ପଠାଇବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି ।

## ସରକାର ସମସ୍ତ ବିଡ଼ି ତିଆରି ଉପଯୋଗୀ କେନ୍ଦୁପତ୍ର କ୍ରୟ କରିନେବେ

—ମନ୍ତ୍ରୀ ଶ୍ରୀ ବକ୍ସିପାତ୍ର

କେନ୍ଦୁପତ୍ର ତୋଳାଳୀଙ୍କ ସମେତ ରାଜ୍ୟର କେନ୍ଦୁପତ୍ର ଉତ୍ପାଦନକାରୀଙ୍କଠାରୁ ସରକାର ସମସ୍ତ କେନ୍ଦୁପତ୍ର କ୍ରୟ କରିନେବେ । କିନ୍ତୁ ଉକ୍ତ କେନ୍ଦୁପତ୍ରଗୁଡ଼ିକ 'ବିଡ଼ି' ତିଆରି ପାଇଁ ଉପଯୁକ୍ତ ହୋଇଥିବା ଆବଶ୍ୟକ ବୋଲି ଜଙ୍ଗଲ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ପ୍ରକାଶ କରିଛନ୍ତି ।

ଗତ ଜୁଲାଇ ୨୧ ତାରିଖରେ ଢେଙ୍କାନାଳ ଜିଲ୍ଲା ଦେମୁରଠାରେ କେନ୍ଦୁପତ୍ର ଉତ୍ପାଦନକାରୀ, ତୋଳାଳୀ, ଶ୍ରମିକ ଓ ବିଭାଗୀୟ କର୍ମଚାରୀମାନଙ୍କ ସମାବେଶରେ ଉଦ୍‌ବୋଧନ ଦେଇ ଶ୍ରୀ ବକ୍ସିପାତ୍ର କହିଲେ ଯେ କେନ୍ଦୁପତ୍ର ତୋଳାଳୀ, ଶ୍ରମିକ ଏବଂ ଉତ୍ପାଦନକାରୀମାନଙ୍କ ସମସ୍ୟା ପ୍ରତି ସରକାରଙ୍କ ସମ୍ପୂର୍ଣ୍ଣ ସହାନୁଭୂତି ରହିଛି । ସେମାନଙ୍କ ସ୍ୱାର୍ଥରକ୍ଷା ପାଇଁ ବର୍ତ୍ତମାନର ସରକାର କେନ୍ଦୁପତ୍ରର ମୂଲ୍ୟକୁ ଗତ ଦୁଇବର୍ଷ ମଧ୍ୟରେ ତିନିଗୁଣ ବୃଦ୍ଧି କରିଛନ୍ତି । ବର୍ତ୍ତମାନ କେନ୍ଦୁପତ୍ରର ମୂଲ୍ୟ କୁଇଣ୍ଟାଲ ପ୍ରତି ୬୫୦ ଟଙ୍କା ସରକାର ଧାର୍ଯ୍ୟ କରିଛନ୍ତି, ଯାହାକି ୧୯୯୦ ମସିହା ପୂର୍ବରୁ ମାତ୍ର ୨୦୦ ଟଙ୍କା ଥିଲା । ସେ କହିଲେ ଯେ ମୂଲ୍ୟତୁଳନାରେ ଉତ୍ପାଦନକାରୀମାନେ 'ଗୁଣାତ୍ମକ' କେନ୍ଦୁପତ୍ର ସରକାରଙ୍କୁ ଯୋଗାଇବା ଆବଶ୍ୟକ । ଗଛ କଟାଯିବା ୪୫ ଦିନ ମଧ୍ୟରେ ବଢ଼ିଥିବା ନୂଆ କଅଁଳିଆ କେନ୍ଦୁପତ୍ର ତୋଳାଯାଇ ଦିଆଯିବା କଥା । ସେ ପ୍ରକାର କେନ୍ଦୁପତ୍ର 'ବିଡ଼ି' ବଳିବା ପାଇଁ ଅତ୍ୟନ୍ତ ଉପଯୁକ୍ତ । ଗାଁ ଗହଳର ଗରିବ ତୋଳାଳୀ ଓ ଶ୍ରମିକମାନେ ନିଜର ଜୀବିକା ନିର୍ବାହ ପାଇଁ ଏ ପ୍ରକାର କେନ୍ଦୁପତ୍ର ବିକ୍ରୀ କରିଥାନ୍ତି । କିନ୍ତୁ ଉତ୍ପାଦନକାରୀମାନେ ତାହା ନକରି, ନିର୍ଦ୍ଧାରିତ ସମୟ ବିତିଯିବା ଦୀର୍ଘଦିନ ପରେ ଗଛରୁ ପତ୍ର ସଂଗ୍ରହ କରିବା ଦେଖାଯାଉଛି । ତାହା କରିବା ଉଦ୍ଦେଶ୍ୟମୂଳକ ବୋଲି ସେ କହିଥିଲେ । ପାକଳ କେନ୍ଦୁପତ୍ର ବିଡ଼ି ତିଆରି ପାଇଁ ଉପଯୁକ୍ତ ହେଉ ନଥିବା ସେ ଦର୍ଶାଇ ଆନ୍ତର୍ଜାତିକ ବଜାରରେ ସେ ପ୍ରକାର ପତ୍ରର ଚାହିଦା ରହୁନାହିଁ ବୋଲି ଉଲ୍ଲେଖ କରିଥିଲେ । ସେଥିପାଇଁ 'ଗୁଣାତ୍ମକ' କେନ୍ଦୁପତ୍ର ନିର୍ଦ୍ଧାରିତ ସମୟ ମଧ୍ୟରେ ଉତ୍ପାଦନକାରୀମାନେ ଯୋଗାଇ ଦେବାକୁ ସେ ପରାମର୍ଶ ଦେଇଥିଲେ । ଉତ୍ପାଦନକାରୀମାନେ ଏହା ନକରି ଅଧିକ ଲୋଭ ଆଶାରେ ବ୍ୟବସାୟୀଙ୍କ ସହ ମିଶି କେନ୍ଦୁପତ୍ରର ଚୋରା ଚାଲାଣ ପାଇଁ ଯେଉଁ ସବୁ ଅସାଧୁ ଓ ଅନୈତିକ ପନ୍ଥା ଅବଲମ୍ବନ କରୁଛନ୍ତି, ସେଥିପ୍ରତି ସରକାର ସଚେତନ ଥିବା ସେ ଦର୍ଶାଇ ସେ ପ୍ରକାର କାର୍ଯ୍ୟକଳାପ ପ୍ରତି ସେ ସେମାନଙ୍କୁ ସତର୍କ କରାଇ ଦେଇ ସେସବୁରୁ ନିବୃତ୍ତ ହେବାକୁ ସେ ପରାମର୍ଶ ଦେଇଥିଲେ । ଯଦି ଉତ୍ପାଦନକାରୀମାନେ କେନ୍ଦୁପତ୍ରର ଚୋରା ଚାଲାଣକୁ ରୋକିବା ଦିଗରେ ସରକାରଙ୍କ ସହ ସହଯୋଗ ନକରନ୍ତି, ତେବେ ଉତ୍ପାଦନକାରୀମାନଙ୍କୁ କେନ୍ଦୁପତ୍ର ଗୋଦାମରେ ଏକକାଳୀନ ଗଚ୍ଛିତ ରଖିବା ପାଇଁ ଦିଆଯାଉଥିବା ପରିମାଣକୁ ହ୍ରାସ କରାଯିବା ଦିଗରେ ସରକାର ବିଚାର କରିବା ପାଇଁ ବାଧ୍ୟ ହେବେ ବୋଲି ସେ ଚେତାଇ ଦେଇଥିଲେ । ବର୍ତ୍ତମାନ କେନ୍ଦୁପତ୍ର ଉତ୍ପାଦନକାରୀମାନେ ୩-୫ କୁଇଣ୍ଟାଲ୍ ପର୍ଯ୍ୟନ୍ତ କେନ୍ଦୁପତ୍ର ନିଜ ଗୋଦାମରେ ଗଚ୍ଛିତ ରଖିବା ପାଇଁ ସରକାରୀ ନିର୍ଦ୍ଦେଶ ରହିଛି । ମନ୍ତ୍ରୀଙ୍କ ପରାମର୍ଶ ଅନୁଯାୟୀ ଉତ୍ପାଦନକାରୀମାନେ ସରକାରଙ୍କ ସହ ସହଯୋଗ କରି କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

ସମ୍ବଲପୁର ଜିଲ୍ଲାର ଦେବଗଡ ଓ ଅନ୍ୟାନ୍ୟ କେତେକ ମଫସଲ ଅଞ୍ଚଳର କେନ୍ଦୁପତ୍ର ତୋଳାଳୀମାନେ ଠିକ୍ ସମୟରେ ସରକାରଙ୍କଠାରୁ ପଇସା ପାଉ ନଥିବା ଅଭିଯୋଗ ସମ୍ପର୍କରେ ସେ ଅନୁସନ୍ଧାନ କରିଥିଲେ । ସରକାରଙ୍କ ପକ୍ଷରୁ ଚେକ୍ ଆକାରରେ ପଠାଯାଉଥିବା ବିପୁଳ ପରିମାଣର ଟଙ୍କା 'ଏନ୍‌କେସ୍' କରିବା ପାଇଁ ଦେବଗଡ ପରି ବ୍ୟାଙ୍କଗୁଡ଼ିକ ସମର୍ଥ ହେଉ ନଥିବାରୁ ସମ୍ବଲପୁର ଭଳି ବଡ଼ ବଡ଼ ସହରାଞ୍ଚଳ ବ୍ୟାଙ୍କରୁ ଟଙ୍କା ଆଣି ଦିଆଯାଉଥିବା ଯୋଗୁଁ ବିଳମ୍ବର ଅସଲ କାରଣ ବୋଲି ସେ କହିଛନ୍ତି ।

ରାଜ୍ୟର ଅନ୍ୟତମ ବୃହତ୍ କେନ୍ଦୁପତ୍ର ଉତ୍ପାଦନ ଅଞ୍ଚଳ, ଆଠମଲ୍ଲିକ ଓ ତେଣ୍ଡ଼ାକୋଳରୁ କେନ୍ଦୁପତ୍ର ତୋଳାଳୀ, ଶ୍ରମିକ ଏବଂ ବିଭାଗୀୟ କର୍ମଚାରୀଙ୍କ ସମେତ ଦୁଇଶହରୁ ଊର୍ଦ୍ଧ୍ୱ ଉତ୍ପାଦନକାରୀ ଏହି ସଭାରେ ଯୋଗ ଦେଇଥିଲେ ।

## ଗ୍ରାମାଞ୍ଚଳର ସମ୍ବାଦ ପ୍ରତି ସମ୍ବାଦ ପତ୍ରମାନେ ଗୁରୁତ୍ୱ ଦେବା ଉଚିତ

—ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର

ସମ୍ବାଦ ପତ୍ରଗୁଡ଼ିକରେ ଅଧିକ ସଂଖ୍ୟକ ଗ୍ରାମାଞ୍ଚଳର ସମ୍ବାଦ ପ୍ରକାଶ ପାଇବା ଉଚିତ ବୋଲି ରାଜ୍ୟ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ମତ ଦେଇଛନ୍ତି ।

ଗତ ଜୁଲାଇ ୨୩ ତାରିଖ ସ୍ଥାନୀୟ ରାଜ୍ୟ ସମବାୟ ବ୍ୟାଙ୍କ ସମ୍ମିଳନୀ କକ୍ଷରେ ଆୟୋଜିତ ସାପ୍ତାହିକ ସମ୍ବାଦ ପତ୍ର 'ସୁଦର୍ଶନ'ର ଦ୍ୱିତୀୟ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ପାତ୍ର କ୍ଷୁଦ୍ର ସମ୍ବାଦ ପତ୍ରଗୁଡ଼ିକ ଗ୍ରାମାଞ୍ଚଳ ସମ୍ବାଦ ପ୍ରକାଶ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଉଚିତ ବୋଲି ପରାମର୍ଶ ଦେଇଥିଲେ । ଗ୍ରାମାଞ୍ଚଳ ସମ୍ବାଦ ପରିବେଷଣ କରୁଥିବା କ୍ଷୁଦ୍ର ସମ୍ବାଦ ପତ୍ରଗୁଡ଼ିକୁ ପ୍ରୋତ୍ସାହନ ଦେବା ଉଚିତ୍ ବୋଲି ଶ୍ରୀ ପାତ୍ର ମତବ୍ୟକ୍ତ କରିଥିଲେ । ପାଠକମାନଙ୍କର ଅଭାବ ଯୋଗୁଁ ଓଡ଼ିଆ ପତ୍ର ପତ୍ରିକାର ଆଶାନୁରୂପ ବିକାଶ ହୋଇପାରୁ ନାହିଁ ବୋଲି ସେ କହିଥିଲେ ।

ରାଜ୍ୟ ବୟନ ଓ ହସ୍ତତନ୍ତ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମ୍ମଦ୍ ମଧ୍ୟ ଏହି ଉତ୍ସବରେ ଯୋଗ ଦେଇଥିଲେ । ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ, ପର୍ଯ୍ୟଟନ ଏବଂ ସଂସ୍କୃତି ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଏହି ଉତ୍ସବରେ ଯୋଗ ଦେଇ ସରକାରଙ୍କ ସୀମିତ ସମ୍ବଳ ମଧ୍ୟରେ ଏକ ସୁଚିନ୍ତିତ ବିଜ୍ଞାପନ ନୀତି ନିର୍ଦ୍ଧାରଣ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । କ୍ଷୁଦ୍ର ସମ୍ବାଦ ପତ୍ରଗୁଡ଼ିକର ବିକାଶ ଉପରେ ଗୁରୁତ୍ୱ ଆରୋପ କରି ଶ୍ରୀ ମିଶ୍ର କହିଲେ ଯେ ବିଜ୍ଞାପନଦାତା ଓ ସମ୍ବାଦ ପତ୍ର, ଉଭୟଙ୍କର ସ୍ୱାର୍ଥକୁ ଆଖି ଆଗରେ ରଖି ଏହି ନୀତି ସ୍ଥିର ହେବା ଆବଶ୍ୟକ ।

ବୟୋଜ୍ୟେଷ୍ଠ ସାମ୍ବାଦିକ ଶ୍ରୀ ନାରାୟଣ ରଥଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ସାମ୍ବାଦିକ ସର୍ବଶ୍ରୀ ବସନ୍ତ ଦାସ, ଅଜୟ ମହାନ୍ତି, ପ୍ରସନ୍ନ କୁମାର ନାୟକ ଏବଂ 'ସୁଦର୍ଶନ'ର ସମ୍ପାଦକ ଶ୍ରୀ ବିଷ୍ଣୁ ଚରଣ ପାଇକରାୟ ସମ୍ବାଦ ପତ୍ର ଓ ସାମ୍ବାଦିକମାନଙ୍କର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରିଥିଲେ । 'ସୁଦର୍ଶନ ପତ୍ରିକା ପକ୍ଷରୁ ସାମ୍ବାଦିକ ଶ୍ରୀ ଗୋପାଳ କୃଷ୍ଣ ମିଶ୍ର ଧନ୍ୟବାଦ ଅର୍ପଣ କରିଥିଲେ ।

## ବାସହୀନଙ୍କୁ ଘରଡ଼ିହ ଯୋଗାଣ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ବାସହୀନଙ୍କୁ ଘରଡ଼ିହ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ଗତ ଜୁନ୍ ମାସରେ ୯୬୬ଟି ଘରଡ଼ିହ ବାସହୀନଙ୍କୁ ଯୋଗାଇ ଦିଆଯାଇଛି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷର ପ୍ରଥମ ତିନିମାସରେ ମୋଟ୍ ୪,୩୫୦ଟି ଘରଡ଼ିହ ଯୋଗାଇ ଦିଆଯାଇଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାପଡ଼ିଛି ।

ସୂଚନାଯୋଗ୍ୟ ଯେ ଉକ୍ତ କାର୍ଯ୍ୟକ୍ରମ ଅନୁଯାୟୀ ଗତ ଆର୍ଥିକ ବର୍ଷରେ ମୋଟ୍ ୧୭,୩୨୫ଟି ଘରଡ଼ିହ ଯୋଗାଇ ଦିଆଯାଇ ଏ କ୍ଷେତ୍ରରେ ଶତକଡ଼ା ୨୮୯ ଭାଗ ସଫଳତା ହାସଲ କରାଯାଇ ପାରିଛି । ଉକ୍ତ ସମୟ ମଧ୍ୟରେ ମୋଟ୍ ୬ ହଜାରଟି ଘରଡ଼ିହ ଯୋଗାଇ ଦେବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

ରାଜ୍ୟରେ ବାସହୀନ ପରିବାରଙ୍କ ଥଇଥାନ ପାଇଁ ଅର୍ଦ୍ଧ–ସହର, ଦ୍ରୁତ ବିକାଶଶୀଳ ଅଞ୍ଚଳ ତଥା ଗ୍ରାମାଞ୍ଚଳରେ ବାସହୀନ ପରିବାରଙ୍କୁ ମାଗଣାରେ ଶୁଣି ଡ଼ିସିମିଲି ପର୍ଯ୍ୟନ୍ତ ଘରଡ଼ିହ ବଣ୍ଟନ କାର୍ଯ୍ୟକ୍ରମ ଗତ ୧୯୭୪–୭୫ ମସିହାରୁ କାର୍ଯ୍ୟକାରୀ କରାଯାଇଛି ।

## ଇନ୍ଦିରା ଅବାସ ଯୋଜନାରେ ୩,୯୯୫ଟି ଗୃହ ଯୋଗାଣ

ଚଳିତ ଆର୍ଥିକ ବର୍ଷର ପ୍ରଥମ ତିନିମାସ, ଅର୍ଥାତ୍ ଗତ ଅପ୍ରେଲଠାରୁ ଜୁନ୍ ମାସ ଶେଷ ସୁଦ୍ଧା ଇନ୍ଦିରା ଆବାସ ଯୋଜନାରେ ମୋଟ୍ ୩,୯୯୫ଟି ଗୃହ ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକଙ୍କୁ ଯୋଗାଇ ଦିଆଯାଇଛି । କେବଳ ଗତମାସରେ ଯୋଗାଇ ଦିଆଯାଇଥିବା ୨,୪୨୯ଟି ଗୃହ ଏହାର ଅନ୍ତର୍ଭୁକ୍ତ । ଏହି କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ମୋଟ୍ ୮,୮୮୫ଟି ଗୃହ ଯୋଗାଇ ଦେବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ବେଳେ ଗତ ଜୁନ୍ ଶେଷ ସୁଦ୍ଧା ଏ କ୍ଷେତ୍ରରେ ଶତକଡ଼ା ୪୫ ଭାଗ ସଫଳତା ହାସଲ କରାଯାଇ ପାରିଛି ।

ଏଠାରେ ଉଲ୍ଲେଖନୀୟ ଯେ ଗତ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମ ନିମନ୍ତେ ମୋଟ୍ ୯,୧୧୦ଟି ଗୃହ ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକଙ୍କୁ ଯୋଗାଇ ଦିଆଯିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ବେଳେ ଏ କ୍ଷେତ୍ରରେ ୧୬,୯୯୭ ଗୃହ ଯୋଗାଇ ଦିଆଯାଇ ଶତକଡ଼ା ୧୮୬ ଭାଗ ସଫଳତା ହାସଲ କରାଯାଇ ପାରିଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାପଡ଼ିଛି ।

## ଗୃହ ନିର୍ମାଣ ନିମନ୍ତେ ଆର୍ଥିକ ସହାୟତା

ବାସଗୃହ ନିର୍ମାଣ ନିମନ୍ତେ ୧୯୯୨–୯୩ ଆର୍ଥିକ ବର୍ଷର ଆରମ୍ଭରୁ ଗତ ଜୁନ୍ ଶେଷ ସୁଦ୍ଧା ୧,୨୮୧ ଜଣଙ୍କୁ ଆର୍ଥିକ ସହାୟତା ପ୍ରଦାନ କରାଯାଇଛି । ଗତମାସରେ ସହାୟତା ପ୍ରଦାନ କରାଯାଇଥିବା ୨୦୦ ଜଣ ଏହାର ଅନ୍ତର୍ଭୁକ୍ତ ।

ସେହିପରି ଅର୍ଥନୈତିକ ଦୁର୍ବଳ ଶ୍ରେଣୀ ଲୋକଙ୍କୁ ଉକ୍ତ ସମୟ ମଧ୍ୟରେ ୭୩୨ଟି ଗୃହ ଯୋଗାଇ ଦିଆଯାଇଛି । ଗତମାସରେ ଯୋଗାଇ ଦିଆଯାଇଥିବା ୭୩୧ଟି ଗୃହ ଏହାର ଅନ୍ତର୍ଭୁକ୍ତ । ଚଳିତ ଆର୍ଥିକ ବର୍ଷ ପାଇଁ ଏହି କାର୍ଯ୍ୟକ୍ରମରେ ୧୫୦୦ଟି ଗୃହ ଉପରୋକ୍ତ ଶ୍ରେଣୀର ଲୋକଙ୍କୁ ଯୋଗାଇ ଦିଆଯିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଅଦ୍ୟାବଧି ଏ କ୍ଷେତ୍ରରେ ଶତକଡ଼ା ୪୮ ଭାଗ ସଫଳତା ହାସଲ କରାଯାଇଛି ବୋଲି ଉକ୍ତ ବିବରଣୀରୁ ଜଣାପଡ଼ିଛି ।

## ଘରୋଇ ଜଙ୍ଗଲରୁ ବିକ୍ରି ଉଦ୍ଦେଶ୍ୟରେ ଗଛ କାଟିବାକୁ ଅନୁମତି ଦିଆଯିବ ନାହିଁ

–ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର

ନିଜସ୍ୱ ଜମିରେ ଗଢ଼ି ଉଠିଥିବା ଜଙ୍ଗଲରୁ ଶୁଖିଲା, ପୁରୁଣା ଓ ଭାଙ୍ଗି ପଡ଼ିଥିବା ଗଛ ବ୍ୟତୀତ ଫଳଗଛ, ଶାଳ ପରି ମୂଲ୍ୟବାନ ଗଛଗୁଡ଼ିକୁ ବ୍ୟବସାୟୀମାନଙ୍କୁ ବିକ୍ରୀ କରିବା ପାଇଁ ଜଙ୍ଗଲ ମାଲିକମାନଙ୍କୁ ଅନୁମତି ଦିଆଯିବ ନାହିଁ ବୋଲି ବିଭାଗୀୟ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ପ୍ରକାଶ କରିଛନ୍ତି ।

ଗତ ଜୁଲାଇ ୨୯ ତାରିଖରେ ସମ୍ବଲପୁର ଜିଲ୍ଲା ବଉରମାଠାରେ ଅନୁଷ୍ଠିତ ଏକ ଜନସଭାରେ ଉଦ୍‌ବୋଧନ ଦେଇ ଶ୍ରୀ ବକ୍ସିପାତ୍ର କହିଲେ ଯେ ସେ ପ୍ରକାର ଜଙ୍ଗଲ କେତେକ ବ୍ୟକ୍ତି ବିଶେଷଙ୍କ ନିଜସ୍ୱ ସମ୍ପତ୍ତି ହୋଇଥିଲେ ମଧ୍ୟ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ବନ ସମ୍ପଦ ନଷ୍ଟ କରାଯିବା କାର୍ଯ୍ୟରୁ ଲୋକଙ୍କୁ ନିବୃତ୍ତ କରାଯିବା ଉଦ୍ଦେଶ୍ୟରେ ଏହି କଟକଣା କରାଯାଇଛି । ଅବଶ୍ୟ ଘରୋଇ ଜଙ୍ଗଲର ମାଲିକମାନଙ୍କୁ ନିଜର ଗୃହବାସ, ଘର ତିଆରି ଓ ଅତ୍ୟାବଶ୍ୟକୀୟ ସୁବିଧା ମେଣ୍ଟାଇବା ପାଇଁ ନିଜସ୍ୱ ଜଙ୍ଗଲରୁ ଆବଶ୍ୟକତା ଅନୁଯାୟୀ ଗଛ କାଟିବା ପାଇଁ ଅନୁମତି ଦିଆଯିବାରେ କୌଣସି ପ୍ରତିବନ୍ଧକ ନାହିଁ । ସେହିପରି ବିବାହ, ବ୍ରତ ଆଦି ସାମାଜିକ ଦାୟିତ୍ୱ ତୁଲାଇବା ଓ ଚିକିତ୍ସା ଭଳି ଜରୁରୀ ଓ ଅପରିହାର୍ଯ୍ୟ ସମୟରେ ଖର୍ଚ୍ଚ ଲାଗି ନିଜସ୍ୱ ଜଙ୍ଗଲରୁ ଗଛ ବିକ୍ରି ପାଇଁ ସୀମିତ ଆକାରରେ ଅନୁମତି ଦେବା ବିଷୟ ସରକାର ସହାନୁଭୂତିର ସହ ବିଚାର କରିପାରନ୍ତି ବୋଲି ସେ ଉଲ୍ଲେଖ କରିଥିଲେ । କିନ୍ତୁ ରାଜ୍ୟରେ ଶାଳ ଓ ପିଆଶାଳ ଗଛ କଟା ଓ ବିକ୍ରୀବଟାକୁ ସମ୍ପୂର୍ଣ୍ଣ ଭାବେ ନିଷିଦ୍ଧ କରାଯିବା ବିଷୟ ସରକାରଙ୍କ ସକ୍ରୀୟ ବିଚାରଧୀନ ଅଛି ବୋଲି ସେ ପ୍ରକାଶ କରିଥିଲେ । ଏହି କାର୍ଯ୍ୟକ୍ରମର ସଫଳତା ପାଇଁ ସେ ଜନ ସହଯୋଗ କାମନା କରିଥିଲେ ।

ଶ୍ରୀ ବକ୍ସିପାତ୍ର ତାଙ୍କ ଗସ୍ତକାଳରେ ବାମଣ୍ଡା ଜଙ୍ଗଲ ଡିଭିଜନ ପରିଦର୍ଶନ କରିଥିଲେ । ଉକ୍ତ ଡିଭିଜନ୍ ଅନ୍ତର୍ଗତ ରସଡ଼ା ଗ୍ରାମ ନିକଟରେ ୬ ଏକରରୁ ଉର୍ଦ୍ଧ୍ୱ ଏକ ଜିଲ୍ଲୀମି ପୁରୁଣା ରସୁଡ଼ା ଜଙ୍ଗଲରେ ଗଢ଼ି ଉଠିଥିବା ନୂତନ ଜଙ୍ଗଲ ସେ ବୁଲି ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ସ୍ଥାନୀୟ ଗ୍ରାମବାସୀଙ୍କ ଉଦ୍ୟମ ଫଳରେ ଏ ପ୍ରକାର ଜଙ୍ଗଲ ସୁରକ୍ଷିତ ଥିବା ଜାଣି ସେମାନଙ୍କ ନିଷ୍ଠା ଓ ଦାୟିତ୍ୱବୋଧର ଉଚ୍ଚ ପ୍ରଶଂସା କରିଥିଲେ । ରସୁଡ଼ା ଜଙ୍ଗଲରେ ଗ୍ରାମ ହୋଇଥିବା ନୂତନ ଜଙ୍ଗଲ ରସଡ଼ା ଜଙ୍ଗଲ କମିଟି ପକ୍ଷରୁ ସୁରକ୍ଷିତ ରହିଛି ।

## କଟକ ଜିଲ୍ଲାରେ ମାପ ଓ ଓଜନ ଠକେଇ ଧରପଗଡ଼

ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ନିର୍ଦ୍ଦେଶ କ୍ରମେ ସମ୍ପ୍ରତି ଦୁଇଦିନ ଧରି କଟକ ଜିଲ୍ଲାର ବିଭିନ୍ନ ସ୍ଥାନରେ ମାପ ଓ ଓଜନ ଠକେଇ ରୋକିବା ପାଇଁ ବ୍ୟାପକ ଧରପଗଡ଼ କରାଯାଇଛି ।

ମାପ ଓ ଓଜନ ବିଭାଗର ଉଚ୍ଚ କର୍ତ୍ତୃପକ୍ଷ ଏବଂ କଟକର ଅତିରିକ୍ତ ନିୟନ୍ତ୍ରକଙ୍କ ତତ୍ତ୍ୱାବଧାନରେ ଯାଜପୁରରୋଡ୍, ସୁବିନ୍ଦା, ଡୁବୁରୀ ଓ ଯାଜପୁର ଅଞ୍ଚଳରେ ଅଶ୍ୱନେକ ଯାଞ୍ଚ କରାଯାଇ ମାପ ଓ ଓଜନ ଆଇନରେ ଅଭିଯୁକ୍ତ ୬୪ ଜଣଙ୍କ ବିରୁଦ୍ଧରେ ଭ୍ରାମ୍ୟମାଣ ଅଦାଲତରେ ମାମଲା ରୁଜୁ କରାଯାଇ ଦୋଷୀ ସାବ୍ୟସ୍ତ ବ୍ୟକ୍ତିମାନଙ୍କଠାରୁ ମୋଟ୍ ୨୮,୬୫୦ ଟଙ୍କା ଜୋରିମାନା ଆଦାୟ କରାଯାଇଥିଲା ।

ଏହା ବ୍ୟତୀତ ରାଜ୍ୟର ନୂତନ ମାପ ଓ ଓଜନ ନିୟନ୍ତ୍ରକ ଶ୍ରୀ ସୁରେନ୍ଦ୍ର ନାଥ ପାଢ଼ୀଙ୍କ ନିର୍ଦ୍ଦେଶ କ୍ରମେ କଟକ ସହରର ବଡ଼ ବଡ଼ ପାଇକାରୀ ବ୍ୟବସାୟୀ ପ୍ରତିଷ୍ଠାନ ଏବଂ ଖୁଚୁରା ଦୋକାନଗୁଡ଼ିକ ଯାଞ୍ଚ କରାଯାଇ ସମ୍ପୃକ୍ତ ମାପ ଓ ଓଜନ ଖିଲାପକାରୀଙ୍କ ବିରୁଦ୍ଧରେ ଯଥେଷ୍ଟ ପରିମାଣରେ ମକଦ୍ଦମାମାନ ରୁଜୁ କରାଯାଇଛି । ସଠିକ୍ ମାପ ଓ ଓଜନ ବ୍ୟବହାର କରାଯିବାକୁ ବ୍ୟବସାୟୀମାନଙ୍କୁ ସତର୍କ କରିଦିଆଯାଇଛି । ମାପ ଓ ଓଜନ ଡେପୁଟି କଂଟ୍ରୋଲର୍ ଗଙ୍ଗାଧର ଦାସଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ଏହି ଯାଞ୍ଚ ଓ ଭ୍ରାମ୍ୟମାଣ ଅଦାଲତ ଯୋଗୁଁ ଜନସାଧାରଣଙ୍କ ମଧ୍ୟରେ ସନ୍ତୋଷ ପ୍ରକାଶ ପାଇଛି ।

## କଳାହାଣ୍ଡି ଜିଲ୍ଲାର ୧୪ଟି କ୍ଷୁଦ୍ର ସେଚ ପ୍ରକଳ୍ପ ନିର୍ମାଣ ଓ ପୁନରୁଦ୍ଧାର ପାଇଁ ସାଢ଼େ ବାର କୋଟି ଟଙ୍କାର ପ୍ରଶାସନିକ ଅନୁମୋଦନ

ଚଳିତ ଆର୍ଥିକ ବର୍ଷରେ ରାଜ୍ୟରେ ମୋଟ୍ ୬୪ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର ସମେତ ନିର୍ମାଣ ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ପ୍ରଶାସନିକ ମଞ୍ଜୁରୀ ଦିଆଯାଇଥିବା ବିଭାଗୀୟ ଶାସନ ସଚିବ ଶ୍ରୀ ଅଜିତ କୁମାର ତ୍ରିପାଠୀ ପ୍ରକାଶ କରିଛନ୍ତି । ଏହା ମଧ୍ୟରେ କଳାହାଣ୍ଡି ଜିଲ୍ଲାରେ ସର୍ବାଧିକ ୧୪ଟି ସେଚ ପ୍ରକଳ୍ପ ଅନ୍ତର୍ଭୁକ୍ତ । ଏଥିପାଇଁ ମୋଟ୍ ୧୨ କୋଟି ୫୪ ଲକ୍ଷ ୨୭ ହଜାର ଟଙ୍କାର ପ୍ରଶାସନିକ ଅନୁମୋଦନ ଦିଆଯାଇଛି ।

କଳାହାଣ୍ଡି ଜିଲ୍ଲାର ବୃହତ୍ ପ୍ରକଳ୍ପ ମଧ୍ୟରୁ କଚକଟା ପ୍ରକଳ୍ପ ପାଇଁ ୩ କୋଟି ଏକ ଲକ୍ଷ ୮ ହଜାର ୭୦୦ ଟଙ୍କା, ପେରାଣ ପ୍ରକଳ୍ପ ପାଇଁ ୨ କୋଟି ୮୦ ଲକ୍ଷ ୪୨ ହଜାର ୬୦୦ ଟଙ୍କା, ବେହେରା ପ୍ରକଳ୍ପ ପାଇଁ ଏକ କୋଟି ୭୪ ଲକ୍ଷ ୪୭ ହଜାର ୩୦୦ ଟଙ୍କା, ପୋଦାଲନାଲା ପ୍ରକଳ୍ପ ପାଇଁ ଏକ କୋଟି ୨୭ ଲକ୍ଷ ଏକ ହଜାର ୧୦୦ ଟଙ୍କା ଏବଂ ଖଜପଡ଼ା ପ୍ରକଳ୍ପ ପାଇଁ ଏକ କୋଟି ୮ ଲକ୍ଷ ୬୬ ହଜାର ୬୦୦ ଟଙ୍କାର ଆର୍ଥିକ ମଞ୍ଜୁରୀ ଦିଆଯାଇଛି । ଏହା ବ୍ୟତୀତ ବ୍ରାହ୍ମଣୀନାଲା ପ୍ରକଳ୍ପ ପାଇଁ ୯୪ ଲକ୍ଷ ୩୮ ହଜାର ୬୦୦ ଟଙ୍କା, ଆଶା ସାଗର ପ୍ରକଳ୍ପ ପାଇଁ ୩୩ ଲକ୍ଷ ୯୫ ହଜାର ୨୦୦ ଟଙ୍କା, କାଉଗୁଡ଼ ପ୍ରକଳ୍ପ ପାଇଁ ୩୨ ଲକ୍ଷ ୯୭ ହଜାର ଟଙ୍କା, ହରିହର ସାଗର ପ୍ରକଳ୍ପ ପାଇଁ ୨୩ ଲକ୍ଷ ୬୩ ହଜାର ୭୦୦ ଟଙ୍କା, ବାଗପୁର ପ୍ରକଳ୍ପ ପାଇଁ ୧୭ ଲକ୍ଷ ୭୩ ହଜାର ଟଙ୍କା, ଅରମେଲା ପ୍ରକଳ୍ପ ପାଇଁ ୧୬ ଲକ୍ଷ ୭୫ ହଜାର ୧୦୦ ଟଙ୍କା, ଝିଙ୍କରଯୋର ପ୍ରକଳ୍ପ ପାଇଁ ୧୬ ଲକ୍ଷ ୩୧ ହଜାର ଟଙ୍କା, ଢାଲିପାଟି ପ୍ରକଳ୍ପ ପାଇଁ ୧୪ ଲକ୍ଷ ୯୮ ହଜାର ୬୦୦ ଟଙ୍କା ଏବଂ ଧନସରା ପ୍ରକଳ୍ପ ପାଇଁ ୧୦ ଲକ୍ଷ ୯୬ ହଜାର ୪୦୦ ଟଙ୍କା ଆର୍ଥିକ ମଞ୍ଜୁରୀ ଦିଆଯାଇଛି ।

ପ୍ରକଳ୍ପଗୁଡ଼ିକର ନିର୍ମାଣ ଏବଂ ପୁନରୁଦ୍ଧାର କାର୍ଯ୍ୟ ଚଳିତ ବର୍ଷରୁ ଆରମ୍ଭ ହେବ । କଳାହାଣ୍ଡି ଜିଲ୍ଲା ଜଳସେଚନ କ୍ଷେତ୍ରରେ ବିଶେଷ ଅନଗ୍ରସର ଥିବାରୁ ପାଣି ଅଭାବ ଯୋଗୁଁ ଅଧିକାଂଶ ସମୟରେ ଫସଲ ନଷ୍ଟ ହୋଇ ମରୁଡ଼ି ଦେଖାଯାଏ । ଫଳରେ ଲୋକଙ୍କ ଅର୍ଥନୈତିକ ପରିସ୍ଥିତି ଦିନକୁ ଦିନ ବିପର୍ଯ୍ୟସ୍ତ ହୋଇପଡ଼ୁଛି । ଏହା ଉପଲବ୍ଧି କରି ରାଜ୍ୟ ସରକାର ଜିଲ୍ଲାର ଜଳସେଚନ ବିକାଶ ପ୍ରତି ଅଗ୍ରାଧିକାର ଦେଇଥିବା ବିଭାଗୀୟ ଶାସନ ସଚିବଙ୍କ ସୂତ୍ରରୁ ପ୍ରକାଶ ।

## କୋରାପୁଟ ଜିଲ୍ଲାରେ ସାତଟି ନୂଆ ସେତୁ ନିର୍ମିତ ହେବା ନିମନ୍ତେ ଦେଢ଼କୋଟିରୁ ଊର୍ଦ୍ଧ୍ୱ ଟଙ୍କା ମଞ୍ଜୁର

କୋରାପୁଟ ଜିଲ୍ଲା ଗ୍ରାମାଞ୍ଚଳରେ ସାତଟି ନୂଆ ସେତୁ ନିର୍ମିତ ହେବ । ଏଥିପାଇଁ ମୋଟ୍ ଏକ କୋଟି ୭୭ ଲକ୍ଷ ୬୬ ହଜାର ୩୫୦ ଟଙ୍କାର ପ୍ରଶାସନିକ ମଞ୍ଜୁରୀ ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ଦିଆଯାଇଥିବା ବିଭାଗୀୟ ଶାସନ ସଚିବଙ୍କ ସୂତ୍ରରୁ ପ୍ରକାଶ ।

ଅନୁମୋଦନ ଲାଭ କରିଥିବା ସେତୁଗୁଡ଼ିକ ମଧ୍ୟରୁ ୩ଟି ସେତୁ ଜିଲ୍ଲାର ଆଭ୍ୟନ୍ତରୀଣ ଗ୍ରାମାଞ୍ଚଳକୁ ସଂଯୋଗ କରୁଥିବା ଉମରକୋଟ–ଚନ୍ଦାହାଣ୍ଡି–ମାଲିଗାଁ ରାସ୍ତାର ଭିନ୍ନ ଭିନ୍ନ ୩ଟି ସ୍ଥାନରେ ନିର୍ମିତ ହେବ । ପ୍ରଥମଟି ଏହି ରାସ୍ତାର ପ୍ରଥମ କିଲୋମିଟରଠାରେ ଭାସ୍କେଲ ନଦୀ ଉପରେ, ଦ୍ୱିତୀୟଟି ୪ କିଲୋମିଟର ଦୂରତାରେ ବାଙ୍କିଲିଯୋଡ଼ି ନଦୀ ଉପରେ ଏବଂ ତୃତୀୟଟି ୬୭ କିଲୋମିଟରଠାରେ ଖୁଖାନାଲ ଉପରେ ନିର୍ମିତ ହେବ । ଏହି ସେତୁଗୁଡ଼ିକ ନିର୍ମାଣ ପାଇଁ ଯଥାକ୍ରମେ ୨୧ ଲକ୍ଷ ୭୨ ହଜାର ୨୦୦ ଟଙ୍କା, ୧୭ ଲକ୍ଷ ୪୪ ହଜାର ୯୦୦ ଟଙ୍କା ଏବଂ ୨୯ ଲକ୍ଷ ୯୬ ହଜାର ୬୦୦ ଟଙ୍କାର ବ୍ୟୟ ଅନୁମୋଦନ ଲାଭ କରିଛି । ଡାବୁଗାଁ–ବୋରିଗୁମ୍ମା ରାସ୍ତାର ନଅ କିଲୋମିଟରଠାରେ ବେଲାରୀ ନାଲା ଉପରେ ସେତୁ ନିର୍ମାଣ ପାଇଁ ୨୯ ଲକ୍ଷ ୬୭ ହଜାର ଟଙ୍କା, ଡାବୁଗାଁ–ଝରଣା ରାସ୍ତାର ୧୮ କିଲୋମିଟରଠାରେ ପାଲିନାଲା ଉପରେ ସେତୁ ନିର୍ମାଣ ପାଇଁ ୨୦ ଲକ୍ଷ ୮୨ ହଜାର ୭୦୦ ଟଙ୍କା, ସିଙ୍ଗପାରୀ–ଧୋଡ୍ରା ରାସ୍ତାର ପ୍ରଥମ କିଲୋମିଟରଠାରେ ସିଙ୍ଗାରୀ ନାଲା ଉପରେ ସେତୁ ନିର୍ମାଣ ପାଇଁ ୩୭ ଲକ୍ଷ ୬୧ ହଜାର ୨୫୦ ଟଙ୍କା ଏବଂ ଡାଙ୍ଗିପାଣିଚାଲୀ ରାସ୍ତାର ୧୯ କିଲୋମିଟରଠାରେ ଗଉଡ଼ ନାଲା ଉପରେ ସେତୁ ନିର୍ମାଣ ପାଇଁ ୨୦ ଲକ୍ଷ ୪୧ ହଜାର ୭୦୦ ଟଙ୍କାର ପ୍ରଶାସନିକ ମଞ୍ଜୁରି ଲାଭ କରିଛି ।

ସମସ୍ତ ୭ଟି ସେତୁର ନିର୍ମାଣ କାର୍ଯ୍ୟ ଚଳିତ ଆର୍ଥିକ ବର୍ଷରେ ଆରମ୍ଭ କରାଯିବ । ଏହି ସେତୁଗୁଡ଼ିକ ସମ୍ପୂର୍ଣ୍ଣ ହେଲେ, ଜିଲ୍ଲାର ବହୁ ଆଭ୍ୟନ୍ତରୀଣ ଓ ଦୁର୍ଗମ ଗ୍ରାମାଞ୍ଚଳ ସହ ଗମନାଗମନର ପଥ ସୁଗମ ହେବା ସଙ୍ଗେ ସଙ୍ଗେ ଆଦିବାସୀ ବହୁଳ ଜିଲ୍ଲାବାସୀ ବିଶେଷ ଉପକୃତ ହୋଇପାରିବେ ।

## ୩୦୦ ମହିଳାଙ୍କୁ ମତ୍ସ୍ୟଗ୍ରୁପ ମାଧ୍ୟମରେ ଆୟ ନିଯୁକ୍ତି

ସମ୍ପ୍ରତି ସଚିବାଳୟଠାରେ ରାଜ୍ୟ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ ଅଧ୍ୟକ୍ଷତାରେ ମଧୁର ଜଳ ମତ୍ସ୍ୟଗ୍ରୁପ କାର୍ଯ୍ୟକ୍ରମ ମାଧ୍ୟମରେ ମହିଳାଙ୍କୁ ଆୟ ନିଯୁକ୍ତି ଦେବା ବିଷୟରେ ଏକ ଆଲୋଚନା ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ମତ୍ସ୍ୟଗ୍ରୁପ କାର୍ଯ୍ୟକ୍ରମ ମାଧ୍ୟମରେ ... (ୟୁ.ଏନ୍.ଡି.ପି.) ମାଧ୍ୟମରେ ଯୋଜନା ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ (ୟୁ.ଏନ୍.ଡି.ପି.) ମାଧ୍ୟମରେ ଯୋଜନା ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ (ୟୁ.ଏନ୍.ଡି.ପି.) ମାଧ୍ୟମରେ ଯୋଜନା ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ (ୟୁ.ଏନ୍.ଡି.ପି.) ମାଧ୍ୟମରେ ଯୋଜନା ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ (ୟୁ.ଏନ୍.ଡି.ପି.) ମାଧ୍ୟମରେ

ଜାଭିୟର୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟଙ୍କ ମିଳିତ ସହଯୋଗରେ ଏବଂ ୟୁନିସେଫ୍‌ର ଆର୍ଥିକ ସହାୟତାରେ ପୁରୀ ଜିଲ୍ଲାର ଗଣିଆ, ଗଞ୍ଜାମ ଜିଲ୍ଲାର ମୋହନା ଓ କେନ୍ଦୁଝର ଜିଲ୍ଲାର ସଦର କାର୍ଯ୍ୟକାରୀ ହେବ । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପ୍ରତି ବ୍ଲକ୍‌ରୁ ୧୦୦ ଜଣ କରି ଏହି ତିନୋଟି ବ୍ଲକ୍‌ରୁ ୩୦୦ ଜଣ ମହିଳାଙ୍କୁ ଏ ବିଷୟରେ ତାଲିମ ଦିଆଯିବ । ଏଥିନିମନ୍ତେ ସମ୍ପୃକ୍ତ ଅଞ୍ଚଳର ବିଧାୟକ, ପଞ୍ଚାୟତ ସମିତି ଚେୟାରମ୍ୟାନ୍, ଜିଲ୍ଲାପାଳ, ଜିଲ୍ଲା ମତ୍ସ୍ୟ ଅଧିକାରୀ, ମତ୍ସ୍ୟଚାଷ ଉନ୍ନୟନର ମୁଖ୍ୟ ନିର୍ବାହୀ, ସିଫା ଓ ଜାଭିୟର୍ ସଂସ୍ଥାର କର୍ମକର୍ତ୍ତାଙ୍କ ସହାୟତାରେ ଏହି ତିନୋଟି ବ୍ଲକ୍‌ରେ ଛୋଟ ଛୋଟ ପୋଖରୀ ସବୁ ଚଳିତ ମାସ ମଧ୍ୟରେ ଚିହ୍ନଟ କରିବା ଏବଂ ଆସନ୍ତା ଦୁଇମାସ ମଧ୍ୟରେ ଏଥିନିମନ୍ତେ ପ୍ରଥମ ପର୍ଯ୍ୟାୟ କର୍ମଶାଳା ଓ ତାଲିମ କାର୍ଯ୍ୟକ୍ରମ ଆରମ୍ଭ କରିବା ପାଇଁ ସ୍ଥିର ହୋଇଛି । ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ସମ୍ପୃକ୍ତ ବ୍ଲକ୍‌ଗୁଡ଼ିକରେ ଜଣେ ଲେଖାଏଁ ମହିଳା ସମ୍ପ୍ରସାରଣ ଅଧିକାରୀଙ୍କୁ ଅବସ୍ଥାପିତ କରାଯିବ । ଏହି କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ମନ୍ତ୍ରୀ ଶ୍ରୀ ପାତ୍ର ସମସ୍ତଙ୍କର ସହଯୋଗ କାମନା କରିଥିଲେ ।

ଏହି ଆଲୋଚନାରେ ବିଧାୟକ ଶ୍ରୀ ରୁଦ୍ର ମାଧବ ରାୟ, ସିଫାର ନିର୍ଦ୍ଦେଶକ, ମତ୍ସ୍ୟ ବିଭାଗ ଶାସନ ସଚିବ ଓ ନିର୍ଦ୍ଦେଶକ, ଭୁବନେଶ୍ୱରସ୍ଥ ଜାଭିୟର୍ ସଂସ୍ଥାର କର୍ମକର୍ତ୍ତା ଏବଂ ସମ୍ପୃକ୍ତ ବିଭାଗୀୟ କର୍ମକର୍ତ୍ତାମାନେ ଅଂଶ ଗ୍ରହଣ କରିଥିଲେ ।

## କର୍କଟ ରୋଗ ନିରୂପଣ ପରି ଅତ୍ୟାବଶ୍ୟକ ଓ ମାନନୀୟ ଅଭିଯାନକୁ କେବଳ ପ୍ରଚାରଧର୍ମୀ କରି ରଖା ନଯାଉ

—ରାଜ୍ୟପାଳ ଶ୍ରୀ ଶର୍ମା

ଦୁଃସାଧ୍ୟ କର୍କଟ ରୋଗ ନିରୂପଣ ପରି ଏହି ମହାନ ଅତ୍ୟାବଶ୍ୟକ ଅଭିଯାନ କେବଳ ପ୍ରଚାର ଧର୍ମୀ ହୋଇ ରହି ନଯାଉ ଓ ସେଥିପାଇଁ ଆନ୍ତରିକତାର ସହ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଆଜି ସମାଜର ପ୍ରତିଷ୍ଠିତ ବ୍ୟକ୍ତି ବିଶେଷ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ଆହ୍ୱାନ ଜଣାଇଛନ୍ତି ।

ସମ୍ପ୍ରତି ଭୁବନେଶ୍ୱର ୯ ନମ୍ବର ୟୁନିଟ୍‌ଠାରେ ଅବସ୍ଥିତ ରୋଟାରୀ ଭବନଠାରେ ଆଚାର୍ଯ୍ୟ ହରିହର ଆଞ୍ଚଳିକ କର୍କଟ ଗବେଷଣା ଚିକିତ୍ସା କେନ୍ଦ୍ର ଏବଂ ଜାତୀୟ କ୍ୟାନସର୍ ଫାଉଣ୍ଡେସନ୍ ସହଯୋଗରେ ଏକ କର୍କଟ ନିରୂପଣ କେନ୍ଦ୍ରକୁ ରାଜ୍ୟପାଳ ଶ୍ରୀ ଶର୍ମା ଉଦ୍‌ଘାଟନ କରିଛନ୍ତି ।

ପ୍ରଦୀପ ଜାଳି ଏହି କେନ୍ଦ୍ରର ଶୁଭ ଉଦ୍‌ଘାଟନ ଅବସରରେ ରାଜ୍ୟପାଳ ଶ୍ରୀ ଶର୍ମା କହିଥିଲେ ଯେ ରୋଟାରୀ ଅନୁଷ୍ଠାନ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଆରମ୍ଭ ହୋଇ ଏହି ଶତାବ୍ଦୀର ଶେଷ ଦଶକ ବେଳକୁ ଏକ ବିଶ୍ୱ ସ୍ୱେଚ୍ଛାସେବୀ ଅନୁଷ୍ଠାନରେ ପରିଣତ ହୋଇଛି । ବହୁବିଧ ସମାଜ ମଙ୍ଗଳ କାର୍ଯ୍ୟ ଏହି ଅନୁଷ୍ଠାନ ଦ୍ୱାରା ପରିଚାଳିତ ହେଉଥିବାରୁ ଆଜି ଦିନରେ କର୍କଟ ରୋଗ ନିରୂପଣ ପରି ମହାନ କାର୍ଯ୍ୟରେ ସହଯୋଗୀ ଭାବେ ରୋଟାରୀ ଅନୁଷ୍ଠାନ ଆଗେଇ ଆସିଥିବାରୁ ସେମାନେ ପ୍ରଶଂସାର ପାତ୍ର ବୋଲି ମାନ୍ୟବର ରାଜ୍ୟପାଳ ପ୍ରକାଶ କରିଥିଲେ ।

ଅଧୁନା ସମାଜରେ ଦେଖା ଦେଇଥିବା କେତେକ ସମସ୍ୟାବଳୀ ଉପରେ ଆଲୋକପାତ କରି ଶ୍ରୀ ଶର୍ମା କହିଥିଲେ ଯେ ସମାଜ ଓ ସରକାର ମଧ୍ୟରେ ଏକ ଭାବାତ୍ମକ ଦୂରତା ଦେଖା ଯାଉଛି । ସରକାର ଯେତେ ଭଲ କରୁଛନ୍ତି ସମାଜ ତାକୁ ବିଶ୍ୱାସ କରିପାରୁ ନଥିବା ବେଳେ ସମାଜ ଯାହା ସରକାରଙ୍କଠାରୁ ଆଶା କରୁଛି ତାକୁ ସରକାର ମଧ୍ୟ ନିଷ୍ଠାପର ଭାବେ କାର୍ଯ୍ୟକାରୀ କରିପାରୁ ନାହାନ୍ତି । ସମାଜ ଓ ସରକାର ମଧ୍ୟରେ ଦେଖା ଦେଇଥିବା ଏହି ଦୂରତାକୁ କମାଇ ଭାବାତ୍ମକ ସ୍ତରରେ ଆହୁରି ନିବିଡ଼ କରିବାକୁ ସମସ୍ତେ ଚେଷ୍ଟିତ ହେବାକୁ ଶ୍ରୀ ଶର୍ମା ପରାମର୍ଶ ଦେଇଥିଲେ ।

ସମାଜ ମଙ୍ଗଳ କାର୍ଯ୍ୟକ୍ରମଗୁଡ଼ିକୁ କେବଳ ପ୍ରଚାର ଧର୍ମୀ କରିଦେଲେ କୌଣସି ସୁଫଳ ଜନସାଧାରଣ ପାଇ ପାରିବେ ନାହିଁ ବୋଲି ସତର୍କ କରାଇ ଦେଇ ଶ୍ରୀ ଶର୍ମା ଆଶା ପ୍ରକାଶ କରିଥିଲେ ଯେ ଭଲକାମଗୁଡ଼ିକର ପ୍ରଭାବଶାଳୀ ପ୍ରଚାର ମଧ୍ୟ ଏକାନ୍ତ ଆବଶ୍ୟକ । ଯେଉଁ ବର୍ଗର ଲୋକମାନେ ସ୍ୱଳ୍ପ ଶିକ୍ଷା, ବଦଭ୍ୟାସ ଓ ଦୂଷିତ ପରିବେଶ ଯୋଗୁଁ ବହୁ ପରିମାଣରେ କର୍କଟ ରୋଗଗ୍ରସ୍ତ ହୋଇଛନ୍ତି ସେହି ବର୍ଗର ଲୋକଙ୍କ ସହ ଜନସମ୍ପର୍କ ସ୍ଥାପନ କରାଯାଇ ଏହି ଦୁଃସାଧ୍ୟ ରୋଗର ନିରାକରଣ ଉପାୟମାନ ଅତି ସରଳ ଭାଷାରେ ସେମାନଙ୍କୁ ବୁଝାଇ ଦିଆଯାଇ ପାରିଲେ ଅନେକ ସୁଫଳ ମିଳିବ ବୋଲି ରାଜ୍ୟପାଳ ଶ୍ରୀ ଶର୍ମା ପରାମର୍ଶ ଦେଇଥିଲେ ।

ଏହି ଉଦ୍‌ଘାଟନୀ ଉତ୍ସବରେ ସମ୍ମାନିତ ଅତିଥି ଭାବେ ନାଲ୍‌କୋର ଚେୟାରମ୍ୟାନ୍ ଶ୍ରୀ ଜୋହରୀ ରୋଟାରୀ ଡିଷ୍ଟ୍ରିକ୍ଟ ଗଭର୍ଣ୍ଣର ଶ୍ରୀ ସୁକୁମାର ସେନ୍, ମୁଖ୍ୟବକ୍ତା ଭାବେ ଡଃ ଉର୍ମିଳା ଖଣ୍ଡ ଅଂଶଗ୍ରହଣ କରି ଏହି କାର୍ଯ୍ୟକୁ ଗ୍ରାମାଞ୍ଚଳକୁ ପ୍ରସାରିତ କରିବା ସହ ଜନଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ଜନସହଯୋଗ କାମନା କରିଥିଲେ । ରୋଟାରିଆନ୍ ଶ୍ରୀ ମଧୁସୂଦନ ମିଶ୍ର ଏହି ଉଦ୍‌ଘାଟନୀ ସଭାରେ ସଭାପତିତ୍ୱ କରି ପ୍ରକାଶ କରିଥିଲେ ଯେ ପ୍ରତି ମାସର ୨ୟ ଓ ୩ୟ ଶନିବାର ଦିନ ପୂର୍ବାହ୍ନ ୯ଟାରୁ ଦିବା ୧ ଘଟିକା ଯାଏ ଏହି କେନ୍ଦ୍ରରେ ରୋଗ ନିରୂପଣ ପରିଚାଳିତ ହେବ ।

ବିଶିଷ୍ଟ ଶଲ୍ୟ ଚିକିତ୍ସକ ଡଃ ଅଜୟ ମିଶ୍ର, ଡଃ ସାହୁ ଓ ରୋଟାରିଆନ୍ ଶ୍ରୀ ସିଂହ ପ୍ରମୁଖ ସହ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଏହି କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ ।

## ବାରମ୍ବାର ବନ୍ୟାରେ ଧନ–ଜୀବନ ହାନି ଯୋଗୁଁ ରାଜ୍ୟପାଳ ଉଦ୍‌ବେଗ ପ୍ରକାଶ କରି ଉଦ୍ଧାର ଓ ସାହାଯ୍ୟ କାର୍ଯ୍ୟକୁ ନିଷ୍ଠାପର ଭାବରେ ପରିଚାଳନା କରିବାକୁ ରାଜ୍ୟପାଳଙ୍କ ପରାମର୍ଶ

ଲାଗ୍ ଲାଗ୍ ଦୁଇଥର ପ୍ରଳୟଙ୍କରୀ ବନ୍ୟାରେ ଓଡ଼ିଶାର ନିମ୍ନ ଜିଲ୍ଲାମାନଙ୍କରେ ବିସ୍ତୀର୍ଣ୍ଣ ଅଞ୍ଚଳ ଜଳମଗ୍ନ ହୋଇଯାଇଥିବାରୁ ଓ ବହୁ ଧନଜୀବନ ହାନୀ ହେବା ଯୋଗୁଁ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗଭୀର ଉଦ୍‌ବେଗ ପ୍ରକାଶ କରିଛନ୍ତି ଓ ଦୁର୍ଗତଙ୍କ ପରିବାର ବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରିଛନ୍ତି ।

ଦୁର୍ଭାଗ୍ୟ ବଶତଃ ବନ୍ୟା, ବାତ୍ୟା ଓ ମରୁଡ଼ି ଓଡ଼ିଶାର ଚିର ସହଚର ଭାବେ ଜନଜୀବନକୁ ଅନାବନ୍ତରେ ଧ୍ୱଂସବିଧ୍ୱଂସ କରି ରାଜ୍ୟବାସୀଙ୍କର ଆର୍ଥିକ ମାନଦଣ୍ଡକୁ ଦୋହଲାଇ ଦେଉଛି ବୋଲି ବର୍ଣ୍ଣନା କରି, ଏ ବର୍ଷ ବର୍ଷାଋତୁ ଆରମ୍ଭରୁ ମାତ୍ର କୋଡ଼ିଏ ଦିନ

ମଧ୍ୟରେ ପ୍ରବଳ ବୃଷ୍ଟିପାତ ହେତୁ ରାଜ୍ୟର ପ୍ରମୁଖ ନଦୀମାନଙ୍କରେ ଯେଉଁ ପ୍ରବଳ ବନ୍ୟା ଆସି ଜନସାଧାରଣଙ୍କ ପ୍ରଭୂତ କ୍ଷତି କରିବା ସଙ୍ଗେ ସଙ୍ଗେ ବହୁ ଧନଜୀବନ ବିପନ୍ନ କରିଛି ବୋଲି ରାଜ୍ୟପାଳ ଶ୍ରୀ ଶର୍ମା ପ୍ରକାଶ କରିଛନ୍ତି। ଏଭଳି ଏକ ପ୍ରାକୃତିକ ବିପର୍ଯ୍ୟୟ ବେଳେ ବିଭିନ୍ନ ସ୍ୱେଚ୍ଛା-ସେବୀ ଅନୁଷ୍ଠାନ, ବଦାନ୍ୟ ବ୍ୟକ୍ତି ବିଶେଷ, ସରକାରୀ ଓ ବେସରକାରୀ ଅନୁଷ୍ଠାନ ଏବଂ ବିଶେଷ କରି ସମସ୍ତ ରାଜନୈତିକ ଦଳମାନେ ଏହି ବିପଦର ମୁକାବିଲା ପାଇଁ ଆଗେଇ ଆସି ନିଷ୍ଠାପର ଭାବେ ଉଦ୍ଧାର କାର୍ଯ୍ୟ ସହ ସାହାଯ୍ୟ ବିତରଣ କାର୍ଯ୍ୟରେ ଅକୁଣ୍ଠ ସାହାଯ୍ୟ ଓ ସହଯୋଗ କରିବାକୁ ରାଜ୍ୟପାଳ ଶ୍ରୀ ଶର୍ମା ନିବେଦନ କରିଛନ୍ତି।

## ନୂଆଖାଇ ଓ ଦୁର୍ଗାପୂଜା ପାଇଁ ବର୍ଦ୍ଧିତ ଚିନି କୋଟା

ଚଳିତ ବର୍ଷ ନୂଆଖାଇ ପର୍ବ ଓ ଦୁର୍ଗାପୂଜା ଉତ୍ସବ ପାଇଁ ସାଧାରଣ ବଣ୍ଟନ ପ୍ରଣାଳୀ ମାଧ୍ୟମରେ ଆବଣ୍ଟନ ଲାଗି ରାଜ୍ୟକୁ ଅଧିକ ଚିନି ମିଳିଛି। ଗତବର୍ଷ କେନ୍ଦ୍ର ସରକାର ରାଜ୍ୟକୁ ସାଧାରଣ ବଣ୍ଟନ ଲାଗି ମାସିକ କୋଟା ୧୩.୦[illegible] ମେଟ୍ରିକ୍ ଟନ୍ ଓ ପୂଜାକୋଟା ୧୮୬୫ ମେଟ୍ରିକ୍ ଟନ୍ ଚିନି ଦେଇଥିବା ସ୍ଥଳେ ଏ ବର୍ଷ ୧୩୬୫ ମେଟ୍ରିକ୍ ଟନ୍ ଅଧିକ ଚିନି ଯୋଗାଇଛନ୍ତି। ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ଉଦ୍ୟମ ଫଳରେ ରାଜ୍ୟକୁ ଏହି ବର୍ଦ୍ଧିତ ହାରରେ ଚିନି ମିଳିପାରିଛି।

ନୂଆଖାଇ ଓ ଦୁର୍ଗାପୂଜା ପାଇଁ ବିଭିନ୍ନ ଜିଲ୍ଲାକୁ ଆବଣ୍ଟନ କରାଯାଇଥିବା ଚିନିର କୋଟା ହେଲା- ବାଲେଶ୍ୱର-୧୭୨ ମେଟ୍ରିକ୍ ଟନ୍, ବଲାଙ୍ଗୀର-୧୦୯ ମେଟ୍ରିକ୍ ଟନ୍, କଟକ-୩୫୨ ମେଟ୍ରିକ୍ ଟନ୍, ଢେଙ୍କାନାଳ-୧୨୧ ମେଟ୍ରିକ୍ ଟନ୍, ଗଞ୍ଜାମ-୨୦୧ ମେଟ୍ରିକ୍ ଟନ୍, କଳାହାଣ୍ଡି-୧୦୧ ମେଟ୍ରିକ୍ ଟନ୍, କେନ୍ଦୁଝର-୮୪ ମେଟ୍ରିକ୍ ଟନ୍, ମୟୂରଭଞ୍ଜ-୧୧୮ ମେଟ୍ରିକ୍ ଟନ୍, ଫୁଲବାଣୀ-୪୦ ମେଟ୍ରିକ୍ ଟନ୍, ପୁରୀ-୧୭୬ ମେଟ୍ରିକ୍ ଟନ୍, ସମ୍ବଲପୁର-୧୮୩ ମେଟ୍ରିକ୍ ଟନ୍, ସୁନ୍ଦରଗଡ଼-୫୩ ମେଟ୍ରିକ୍ ଟନ୍ ଓ କୋରାପୁଟ-୧୪୮ ମେଟ୍ରିକ୍ ଟନ୍। ଏହା ବ୍ୟତୀତ ଭୁବନେଶ୍ୱର ଓ ରାଉରକେଲା ପାଇଁ ଯଥାକ୍ରମେ ୮୬ ମେଟ୍ରିକ୍ ଟନ୍ ଓ ୫୫ ମେଟ୍ରିକ୍ ଟନ୍ ଚିନି ଯୋଗାଇ ଦିଆଯାଇଛି। ସେପ୍ଟେମ୍ବର ମାସରେ ଉକ୍ତ ବର୍ଦ୍ଧିତ ଆବଣ୍ଟନ ଅନୁଯାୟୀ ସହର ଓ ଗ୍ରାମାଞ୍ଚଳର ଖାଉଟିମାନେ କଣ୍ଟ୍ରୋଲ ଦୋକାନଗୁଡ଼ିକରୁ ଅଧିକ ଚିନି ନେଇପାରିବେ। ଏ ସମ୍ପର୍କରେ ସାଧାରଣ ଲୋକଙ୍କୁ ଜଣାଇ ଦେବା ଲାଗି ବିହିତ ପଦକ୍ଷେପ ନେବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି।

## ବିଂଶସୂତ୍ରୀ ଅନ୍ତର୍ଭୁକ୍ତ 'ବସ୍ତି ଅଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ'
## ୧୯୯୨-୯୩ ଆରମ୍ଭରୁ ଅଦ୍ୟାବଧି ୩,୧୭୬ ଜଣ ବସ୍ତିବାସିନ୍ଦା ଉପକୃତ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ବସ୍ତିବାସିନ୍ଦାଙ୍କ ନିମନ୍ତେ ପରିବେଶ ଉନ୍ନୟନ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ। ଏହି କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷ, ଅର୍ଥାତ୍ ୧୯୯୨-୯୩ ଆରମ୍ଭରୁ ଗତ ଜୁଲାଇ ଶେଷସୁଦ୍ଧା ମୋଟ୍ ୩୧୭୬ ଜଣ ବସ୍ତିବାସିନ୍ଦା ଉପକୃତ ହୋଇଛନ୍ତି। କେବଳ ଗତମାସରେ ଏଥିରେ ଉପକୃତ ହୋଇଥିବା ବସ୍ତିବାସିନ୍ଦାଙ୍କ ସଂଖ୍ୟା ହେଉଛି ୨୯୪। ଚଳିତ ବର୍ଷ ଉକ୍ତ କାର୍ଯ୍ୟକ୍ରମରେ ୯୫୫୬ ଜଣ ବସ୍ତିବାସିନ୍ଦାଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ବେଳେ ଗତ ଜୁଲାଇ ଶେଷ ସୁଦ୍ଧା ଏ କ୍ଷେତ୍ରରେ ଶତକଡ଼ା ୩୩ ଭାଗ ସଫଳତା ହାସଲ ହୋଇଛି ବୋଲି ଗତ ଜୁଲାଇ ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାଯାଇଛି।

## ଓ: ଟି: ଏମ୍:କୁ ଲାଭଜନକ ସଂସ୍ଥାରେ ପରିଣତ କରିବା ପାଇଁ ପଦକ୍ଷେପ

ସର୍ବଭାରତୀୟ ସ୍ତରରେ ଯେତେବେଳେ ସୂତାକଳ ଓ ଲୁଗା କଳଗୁଡ଼ିକ ଘଡ଼ିସନ୍ଧି ମୁହୂର୍ତ୍ତରେ ଗତି କରୁଛି ଏବଂ ରାଜ୍ୟର ସୂତାକଳଗୁଡ଼ିକ ଯେପରି କ୍ଷତିର ସମ୍ମୁଖୀନ ହେଉଛି, ସେତେବେଳେ ସମ୍ପୃକ୍ତ ସମସ୍ତେ ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ର ଉନ୍ନତି ପାଇଁ ନିଷ୍ଠାପର ଉଦ୍ୟମ କରିବାକୁ ରାଜ୍ୟ ବୟନ ହସ୍ତତନ୍ତ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମଦ୍ ନିବେଦନ କରିଛନ୍ତି।

ଗତ ୧୮ ତାରିଖରେ ଚୌଦ୍ୱାରସ୍ଥିତ ଓ:ଟି:ଏମ୍: ପରିଦର୍ଶନ ଓ ଏହି ମିଲ୍‌ର କାର୍ଯ୍ୟ ସମ୍ପର୍କରେ ଅନୁଧ୍ୟାନ କରି ଶ୍ରୀ ଅହମଦ୍ ମିଲ୍‌ର ଉତ୍ପାଦନର ଅଗ୍ରଗତି ଏବଂ ଲାଭ କ୍ଷତିର ନିୟମିତ ପର୍ଯ୍ୟାଲୋଚନା ପାଇଁ ଏକ ନୂତନ ପଦ୍ଧତି ଅବଲମ୍ବନ କରାଯିବା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି। ମିଲ୍‌କୁ ବଞ୍ଚାଇ ରଖିବା ପାଇଁ ପ୍ରତ୍ୟେକ କ୍ଷେତ୍ରରେ ଖର୍ଚ୍ଚକାଟ କରିବାକୁ ସେ ପରାମର୍ଶ ଦେଇଛନ୍ତି। ମିଲ୍‌ର ସୂତାକଟା, ଲୁଗାବୁଣା, କପଡ଼ା ପ୍ରସେସିଂ ଏବଂ ବିକ୍ରୟ, ଏପରି ୪ଟି ବିଭାଗ ମଧ୍ୟରୁ ପ୍ରତ୍ୟେକ ବିଭାଗରେ କେତେଜଣ ଶ୍ରମିକ କାର୍ଯ୍ୟକରନ୍ତି, କେତେ ଉତ୍ପାଦନ ହେଉଛି ଏବଂ କେତେ ଖର୍ଚ୍ଚ ହେଉଛି, ଏହା ପ୍ରତି ସପ୍ତାହରେ ଥରେ ଲେଖାଏଁ ସମୀକ୍ଷା କରିବାକୁ ସେ ପରାମର୍ଶ ଦେଇଛନ୍ତି। ଏହା ଫଳରେ ପ୍ରତ୍ୟେକ ବିଭାଗର ପୃଥକ୍ ପୃଥକ୍ ଲାଭ ଓ କ୍ଷତିର ହିସାବ ନିୟମିତ ଭାବେ ଜଣା ପଡ଼ିବ। ଏଥି ପାଇଁ ପ୍ରତି ବିଭାଗ ନିମନ୍ତେ ଦୈନିକ ଉତ୍ପାଦନ ରେଜିଷ୍ଟ୍ରାର ରଖିବାକୁ ସେ ପରାମର୍ଶ ଦେଇଛନ୍ତି। ଉତ୍ପାଦନ ତୁଳନାରେ ଅଧିକ ଖର୍ଚ୍ଚ ହେଉଥିଲେ, ଖର୍ଚ୍ଚର ପରିମାଣକୁ କମାଯାଇ ଉତ୍ପାଦନ ବୃଦ୍ଧିପାଇଁ ପଦକ୍ଷେପ ନିଆଯାଇ ପାରିବ। ପ୍ରକୃତରେ କେତେ ଉତ୍ପାଦନ ହେବା କଥା ଏବଂ ସେତିକି ପରିମାଣର ଉତ୍ପାଦନ ହେଉଛି କି ନାହିଁ, ଯଦି ନହେଉଛି, ତା'ର କାରଣ କ'ଣ, ଏହି ସାପ୍ତାହିକ ସମୀକ୍ଷାରୁ ଜଣାପଡ଼ିବ ଏବଂ କ୍ଷତି ପାଇଁ କିଏ ଦାୟୀ, ତାହା ନିର୍ଣ୍ଣୟ କରାଯାଇ ପାରିବ। ପ୍ରତ୍ୟେକ ମାସରେ ମୋଟ ଉତ୍ପାଦନ ଓ ବ୍ୟୟର ପରିମାଣକୁ ମଧ୍ୟ ସମୀକ୍ଷା କରିବାକୁ ସେ ପରାମର୍ଶ ଦେଇଛନ୍ତି। ମିଲ୍‌ର ପରିବେଶକୁ ପରିଷ୍କାର ପରିଚ୍ଛନ୍ନ ରଖିବା, ଯନ୍ତ୍ରପାତିର ଉପଯୁକ୍ତ ରକ୍ଷଣାବେକ୍ଷଣ, ଶ୍ରମିକମାନଙ୍କ ନିୟମିତ ଉପସ୍ଥିତି ଏବଂ ସେମାନଙ୍କ କାର୍ଯ୍ୟରେ ସମୟାନୁବର୍ତ୍ତିତା ରକ୍ଷା ଦିଗରେ ସେ ଗୁରୁତ୍ୱ ଦେଇଛନ୍ତି। ମିଲ୍‌ର ଭଙ୍ଗାରୁଜା କାର୍ଯ୍ୟ ଅଭିଯୋଗରେ ସସ୍‌ପେଣ୍ଡ ହୋଇଥିବା ଶ୍ରମିକମାନଙ୍କ କେଶଗୁଡ଼ିକୁ ପୁଣି ଥରେ ବିଚାର କରିବା ପାଇଁ ସେ ବୋର୍ଡ଼ ଅଫ ଡିରେକ୍ଟରଙ୍କୁ ଅନୁରୋଧ କରିଛନ୍ତି। ଏହି ମିଲ୍ କୌଣସି କାରଣ ବଶତଃ ଯଦି ପୁନର୍ବାର ବନ୍ଦ ହୋଇଯାଏ, ତେବେ ଏହାକୁ ଆଉଥରେ ଚାଲୁ କରିବା କଷ୍ଟକର ହେବ ବୋଲି ଦର୍ଶାଇ ମିଲ୍‌ର ଉନ୍ନତି ପାଇଁ ସମସ୍ତେ ମିଳିମିଶି କାର୍ଯ୍ୟ ନକଲେ, ସମ୍ପୃକ୍ତ ସମସ୍ତଙ୍କ ଭାଗ୍ୟ ଅନ୍ଧକାର ମଧ୍ୟକୁ ଠେଲି ହୋଇଯିବ ବୋଲି ସେ ସତର୍କ କରାଇ ଦେଇଛନ୍ତି।

ଅନ୍ୟମାନଙ୍କ ମଧ୍ୟରେ ଚିନ୍‌ଫେଡ୍‌ର ଚେୟାରମ୍ୟାନ୍ ଏବଂ ବିଭାଗୀୟ ବରିଷ୍ଠ ଅଧିକାରୀମାନେ ମନ୍ତ୍ରୀଙ୍କ ସହ ମିଲ୍ ପରିଦର୍ଶନରେ ଯାଇଥିଲେ ।

ସୂଚନାଯୋଗ୍ୟ ଯେ ଶ୍ରମିକ ଅଶାନ୍ତି ଓ ହିଂସାକାଣ୍ଡ ଯୋଗୁ ଗତ ମଇ ମାସ ୭ ତାରିଖଠାରୁ ଜୁନ୍ ମାସ ୨୧ ତାରିଖ ପର୍ଯ୍ୟନ୍ତ ଓ.ଟି.ଏମ୍.କୁ ବନ୍ଦ କରି ଦିଆଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଆଦେଶ କ୍ରମେ ଏହି ମିଲ୍‌କୁ ଜୁନ୍ ମାସ ୨୨ ତାରିଖଠାରୁ ଖୋଲାଯାଇଛି । ବର୍ତ୍ତମାନ ମିଲ୍ ଖୋଲା ରହିଛି ଏବଂ ଶ୍ରମିକମାନେ କାର୍ଯ୍ୟରତ ଅଛନ୍ତି । ମିଲ୍ କ୍ରମାଗତ ଭାବେ କ୍ଷତିରେ ଚାଲୁଥିବା ଯୋଗୁ ଏହାର କିପରି ଏକ ଲାଭଜନକ ସଂସ୍ଥାରେ ପରିଣତ ହୋଇପାରିବ, ସେଥିପାଇଁ ମନ୍ତ୍ରୀ ଶ୍ରୀ ଅହମ୍ମଦ ବିଶେଷ ଉଦ୍‌ବିଗ୍ନ ।

## ବିପର୍ଯ୍ୟସ୍ତ ସହାୟତା ପାଣ୍ଠି ଅନୁଦାନରେ କୋରାପୁଟକୁ ବିକଳ୍ପ ରାସ୍ତା ନିର୍ମାଣ

ବିପର୍ଯ୍ୟସ୍ତ ସହାୟତା ପାଣ୍ଠି ଅନୁଦାନରେ ୧୧ କିଲୋମିଟର ଦୈର୍ଘ୍ୟ ପଳାସପୁର-ଦେଙ୍ଗାଓଡ଼ ପଞ୍ଚାୟତ ସମିତି ରାସ୍ତାକୁ ଜିଲ୍ଲା ମୁଖ୍ୟ ରାସ୍ତା ସ୍ତରକୁ ଉନ୍ନତି କରାଯାଇ ବ୍ରହ୍ମପୁରରୁ କୋରାପୁଟକୁ ସ୍ଥାୟୀ ବିକଳ୍ପ ରାସ୍ତା ନିର୍ମାଣ କରାଯାଉଛି । ଏହି ରାସ୍ତା ନିର୍ମାଣ ଲାଗି ଉକ୍ତ ପାଣ୍ଠିରୁ ପୂର୍ତ୍ତ ବିଭାଗକୁ ୭୮ ଲକ୍ଷ ୭୪ ହଜାର ଟଙ୍କା ଅନୁଦାନ ଯୋଗାଇ ଦିଆଯାଇଥିଲା । ବର୍ତ୍ତମାନ ଏହି ରାସ୍ତାକୁ ବର୍ଷସାରା ଗୁରୁ ଯାନବାହାନ ଚଳାଚଳ ନିମନ୍ତେ ଖୋଲି ଦିଆଯାଇଛି ।

ଗତ ୧୯୯୦ ନଭେମ୍ବର ମାସର ପ୍ରଳୟଙ୍କରୀ ବନ୍ୟାରେ ମଉଳାଭଞ୍ଜ ନିକଟରେ ଘୋଡ଼ାହାଡ ନଦୀ ପୋଲ ଭାଙ୍ଗିଯିବା ହେତୁ ବ୍ରହ୍ମପୁରରୁ କୋରାପୁଟ ଜିଲ୍ଲା ସହିତ ରାସ୍ତା ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଇଥିଲା । ଏହି ପୋଲର ପୁନଃ ନିର୍ମାଣ ବ୍ୟୟ ବହୁଳ ଓ ସମୟ ସାପେକ୍ଷ ହୋଇଥିବା ଯୋଗୁଁ ଗୁରୁ ଯାନବାହାନର ଚଳାଚଳ ନିମନ୍ତେ ପଳାସପୁର-ଦେଙ୍ଗାଓଡ଼ ପଞ୍ଚାୟତ ସମିତି ରାସ୍ତାର ଉନ୍ନତି କରାଯାଉଛି । ବିଶ୍ୱବ୍ୟାଙ୍କ ସହାୟତାରେ ଘୋଡ଼ାହାଡ଼ ନଦୀ-ପୋଲଟିର ନିର୍ମାଣ କାର୍ଯ୍ୟ ଚାଲିଛି । ଏହା ସମ୍ପୂର୍ଣ୍ଣ ହେଲେ ବ୍ରହ୍ମପୁରରୁ କୋରାପୁଟକୁ ଦୁଇଟି ସବୁଦିନିଆ ରାସ୍ତା ହେବ ।

## ବିଶ୍ୱବ୍ୟାଙ୍କ ସହାୟତାରେ ଓଡ଼ିଶାରେ ଚିଙ୍ଗୁଡ଼ି ଓ ମତ୍ସ୍ୟ ଚାଷ ଉନ୍ନୟନ କାର୍ଯ୍ୟକ୍ରମ

ନିକଟରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ରଙ୍କ ଅଧ୍ୟକ୍ଷତାରେ ଓଡ଼ିଶାରେ ବିଶ୍ୱବ୍ୟାଙ୍କ ସହାୟତାରେ ଜଳଭଣ୍ଡାରରେ ଚିଙ୍ଗୁଡ଼ି ଓ ମତ୍ସ୍ୟଚାଷ ଉନ୍ନୟନ ପାଇଁ କାର୍ଯ୍ୟକାରୀ ହେବାକୁ ଥିବା ଯୋଜନା ସମ୍ପର୍କୀୟ ଆଲୋଚନା ବୈଠକ ଅନୁଷ୍ଠିତ ହୋଇଯାଇଛି ।

ଏହି ପ୍ରକଳ୍ପ ନିମନ୍ତେ ମୋଟ୍ ୭୦ କୋଟି ୯୩ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏଥିମଧ୍ୟରୁ ଚିଙ୍ଗୁଡ଼ି ଚାଷ ପାଇଁ ୬୨ କୋଟି ୪୧ ଲକ୍ଷ ଟଙ୍କା, ଜଳଭଣ୍ଡାରରେ ମାଛଚାଷ ପାଇଁ ୬ କୋଟି ୪୪ ଲକ୍ଷ ଟଙ୍କା ଏବଂ ପରିଚାଳନା, ବୈଷୟିକ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ଏକ କୋଟି ୭୮ ଲକ୍ଷ ଟଙ୍କା ବ୍ୟୟ କରାଯିବ । ଏହି ପ୍ରକଳ୍ପ ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଓ ଭଦ୍ରକାଳି ତହସିଲ୍‌ର ୮୯୦ ହେକ୍ଟର ଏବଂ କଟକ ଜିଲ୍ଲାର ମାର୍ଶାଘାଇ ତହସିଲ୍‌ର ୪୫୦ ହେକ୍ଟର ଜମିରେ କ୍ଷୁଦ୍ରଚାଷୀ ଓ ଶିକ୍ଷିତ ବେକାରଙ୍କ ମାଧ୍ୟମରେ କାର୍ଯ୍ୟକାରୀ କରାଯିବ । ଏହା ଚଳିତ ବର୍ଷଠାରୁ ଆରମ୍ଭ ହୋଇ ୭ ବର୍ଷ ମଧ୍ୟରେ ଶେଷ ହେବାର କାର୍ଯ୍ୟକ୍ରମ ରହିଛି । ଏହି ଯୋଜନା କାର୍ଯ୍ୟକାରୀ ହେବା ପାଇଁ ବିଶ୍ୱବ୍ୟାଙ୍କ ଯୋଜନାର ଶତକଡ଼ା ୯୦ ଭାଗ ଅର୍ଥ ସାହାଯ୍ୟ ଆକାରରେ ଯୋଗାଇ ଦେବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି ।

ଏହି ବୈଠକରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗ ଶାସନ ସଚିବ, ମତ୍ସ୍ୟ ବିଭାଗ ନିର୍ଦ୍ଦେଶକ, ଗୋପାଳପୁର ବନ୍ଦରର ମୁଖ୍ୟ ନିର୍ମାଣ ଯନ୍ତ୍ରୀ, ସି.ଆଇ.ସି.ଏଫ୍.ର ନିର୍ଦ୍ଦେଶକ, ଓଡ଼ିଶା ମତ୍ସ୍ୟ ବିକାଶ ଉନ୍ନୟନ ନିଗମର ପରିଚାଳନା ନିର୍ଦ୍ଦେଶକ ଏବଂ ଅନ୍ୟାନ୍ୟ ବିଭାଗୀୟ କର୍ମକର୍ତ୍ତାମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ସମ୍ବଲପୁର ଜିଲ୍ଲାର ବିଦ୍ୟୁତ୍ ସରବରାହରେ ଉନ୍ନତି ଓ ଗୁଣାତ୍ମକ ପରିବର୍ତ୍ତନ ପାଇଁ ବିଶେଷ ପଦକ୍ଷେପ

ସମ୍ବଲପୁର ଜିଲ୍ଲାର ବିଦ୍ୟୁତ୍ ଯୋଗାଣ ପରିସ୍ଥିତିର ଉନ୍ନତି ଓ ଗୁଣାତ୍ମକ ପରିବର୍ତ୍ତନ ପାଇଁ ରାଜ୍ୟ ସରକାର କେତେକ ବିଶେଷ ପଦକ୍ଷେପ ନେଉଛନ୍ତି । ସମ୍ପ୍ରତି ଭୁବନେଶ୍ୱରଠାରେ ଉର୍ଜ୍ଜା ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଅଧ୍ୟକ୍ଷତାରେ ସମ୍ବଲପୁର ଜିଲ୍ଲାର ବିଦ୍ୟୁତ୍ ଯୋଗାଣ ପରିସ୍ଥିତି ସମ୍ପର୍କରେ ଅନୁଷ୍ଠିତ ଉଚ୍ଚସ୍ତରୀୟ ସମୀକ୍ଷା ବୈଠକରୁ ପ୍ରକାଶ ।

ଉକ୍ତ ବୈଠକ ଆଲୋଚନାରୁ ପ୍ରକାଶ ଯେ ରେଢ଼ାଖୋଲଠାରେ ୧୩୨ କେ.ଭି. ଶକ୍ତି ସମ୍ପନ୍ନ ନୂଆ 'ଗ୍ରିଡ୍' ସବ୍-ଷ୍ଟେସନ ପ୍ରତିଷ୍ଠା କରାଯିବ । ଏଥିପାଇଁ ମୋଟ୍ ୪ କୋଟି ୭୨ ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଏହି କାର୍ଯ୍ୟ ବିଶ୍ୱବ୍ୟାଙ୍କ ଅର୍ଥ ସହାୟତାରେ ଆସନ୍ତା ଦୁଇବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ହେବ । ଏହି ପ୍ରକଳ୍ପ ସମ୍ପର୍କରେ ଚୂଡ଼ାନ୍ତ ରୂପରେଖ ପ୍ରସ୍ତୁତ କରିବା ପାଇଁ ଏକ ବିଶେଷଜ୍ଞ ଦଳ ଖୁବ୍ ଶୀଘ୍ର ସମ୍ପୃକ୍ତ ଅଞ୍ଚଳ ପରିଦର୍ଶନରେ ଯିବେ । ଏହା ସମ୍ପୂର୍ଣ୍ଣ ହେଲେ ଦେବଗଡ଼ ଅଞ୍ଚଳକୁ ଉଭୟ ପ୍ରସ୍ତାବିତ ରେଢ଼ାଖୋଲ ଗ୍ରିଡ୍ ସବ୍-ଷ୍ଟେସନ୍ ଏବଂ ରାଇରାଖୋଲ ଗ୍ରିଡ୍ ସବ୍-ଷ୍ଟେସନରୁ ପର୍ଯ୍ୟାପ୍ତ ବିଦ୍ୟୁତ୍ ଯୋଗାଣ ହୋଇପାରିବ ଏବଂ ରେଢ଼ାଖୋଲ ଓ ବରଗଡ଼ ଅଞ୍ଚଳକୁ ବିଦ୍ୟୁତ୍ ଯୋଗାଣରେ ପ୍ରଭୂତ ଉନ୍ନତି ହେବ ।

ସମ୍ବଲପୁର ସହରର ବିଦ୍ୟୁତ୍ ଯୋଗାଣ ପରିସ୍ଥିତିର ଉନ୍ନତି ପାଇଁ ଅଇଁଠାପାଲିଠାରେ ଗୋଟିଏ ନୂଆ ୭.୫ ଏମ୍.ଭି.ଏ. ୩୩/୧୧ କେ.ଭି. ଶକ୍ତି ସମ୍ପନ୍ନ ଟ୍ରାନ୍ସଫର୍ମର ସ୍ଥାପନ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ହେଉଛି । ଏହା ବ୍ୟତୀତ ଚିମାପଡ଼ାଠାରେ ୭.୫ ଏମ୍.ଭି.ଏ. ଟ୍ରାନ୍ସଫର୍ମର ସ୍ଥାପନ ଓ ୩୩/୧୧ କେ.ଭି. ଶକ୍ତି ସମ୍ପନ୍ନ ଦୁଇଟି ନୂଆ ଟ୍ରାନ୍ସଫର୍ମର ସ୍ଥାପନ ୪୮ଟି ୧୦୦ ପରିକଳ୍ପନା କରାଯାଇଛି । ସମ୍ବଲପୁର ସହର ମଧ୍ୟରେ ୪୮ଟି ୧୦୦ କେ.ଭି.ଏ./ଏମ୍.ଏ. ଏବଂ କେ.ଭି.ଏ. ୫/୫ ଏବଂ ୨୮ଟି ୨୫୦ କେ.ଭି.ଏ./ଏମ୍.ଏ. ଶକ୍ତି ସମ୍ପନ୍ନ, ଏପରି ଆଉ ଦୁଇଟି ଟ୍ରାନ୍ସଫର୍ମର ପ୍ରତିଷ୍ଠା ପ୍ରସ୍ତାବ ରହିଛି । ଏଥିପାଇଁ ୨୭ କିଲୋମିଟର ବିଶିଷ୍ଟ ଗୋଟିଏ ନୂଆ ୩୩ କେ.ଭି. ଶକ୍ତି ସମ୍ପନ୍ନ ଲାଇନ୍ ଟଣାହେବ । ସହରାଞ୍ଚଳରେ ବିଦ୍ୟୁତ୍ ଯୋଗାଣ ପରିସ୍ଥିତିର ଉନ୍ନତି ପାଇଁ ମୋଟ୍ ୭ କୋଟି ୮୩ ଲକ୍ଷ ଟଙ୍କା ବ୍ୟୟ ହେବ ଏବଂ ଏହି ପ୍ରକଳ୍ପଗୁଡ଼ିକ ଏ.ଡି.ବି. ଆର୍ଥିକ ସହାୟତାରେ କାର୍ଯ୍ୟକାରୀ କରାଯିବ ।

ଜିଲ୍ଲାର ବିଦ୍ୟୁତ୍ ଯୋଗାଣ ପରିସ୍ଥିତିରେ ଉନ୍ନତି କରିବା ପାଇଁ ୩୨ କୋଟି ୬୯ ଲକ୍ଷ ଟଙ୍କାର ଏକ "ପୂର୍ଣ୍ଣାଙ୍ଗ ଅଭିବୃଦ୍ଧି ପ୍ରକଳ୍ପ" ପ୍ରସ୍ତୁତ କରାଯାଇ ଆର୍ଥିକ ସହାୟତା ପାଇଁ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ ପକ୍ଷରୁ ବିଶ୍ୱବ୍ୟାଙ୍କକୁ ପ୍ରସ୍ତାବ ଉପସ୍ଥାପନ କରାଯାଇଛି। ଶେଷପୁରଠାରେ ଅକାମୀ ହୋଇଯାଇଥିବା ସମ୍ବଲପୁରର "ଓ୍ୱାଟର ୱର୍କସ୍ ଷ୍ଟେସନରେ" ୨×୫୦ କେ.ଭି.ଏ. ୧୧/୪ କେ.ଭି. ଶକ୍ତି ସମ୍ପନ୍ନ ଟ୍ରାନ୍ସଫର୍ମରଙ୍କୁ ବଦଳାଯାଇ ନୂଆ ଟ୍ରାନ୍ସଫର୍ମର ସ୍ଥାପନ କରାଯିବ।

ବୈଠକରେ ଯୋଗ ଦେଇଥିବା ମନ୍ତ୍ରୀ ଏବଂ ବିଧାୟକମାନେ ଜିଲ୍ଲା ବିଦ୍ୟୁତ୍‌ଚାଳିତ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକର ଫଳପ୍ରଦ କାର୍ଯ୍ୟକାରିତା ଉପରେ ଗୁରୁତ୍ୱ ଆରୋପ କରିଥିଲେ। ସମ୍ବଲପୁର, ଗୋବିନ୍ଦପୁର, ରେଢ଼ାଖୋଲ, କୁଚିଣ୍ଡା ସଦର ସମେତ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ଘନଘନ ବିଦ୍ୟୁତ୍ ସରବରାହରେ ବ୍ୟାଘାତ, ବିଦ୍ୟୁତ୍ କାଟ୍ ଏବଂ କମ୍ ଭୋଲଟେଜ୍ ବିଦ୍ୟୁତ୍ ଯୋଗାଣ ଯୋଗୁଁ ଅସନ୍ତୋଷ ପ୍ରକାଶ କରିଥିଲେ। ବୁର୍ଲାକୁ ବିଦ୍ୟୁତ୍ ଯୋଗାଣ କ୍ଷେତ୍ରରେ ବାରମ୍ବାର ବ୍ୟାଘାତ ସୃଷ୍ଟି ହେଉଥିବା ଏବଂ ସମ୍ବଲପୁର ପୌର ପରିଷଦ ପକ୍ଷରୁ ବିଦ୍ୟୁତ୍ ଯୋଗାଣ ପାଇଁ ଜମା କରାଯାଇଥିବା ୦ ଲକ୍ଷ ଟଙ୍କାର କାର୍ଯ୍ୟ ସମ୍ପାଦନରେ ଅଯଥା ବିଳମ୍ବ ହେଉଥିବା ସମ୍ପର୍କରେ ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଉଲ୍ଲେଖ କରିଥିଲେ। ଘନଘନ ବିଦ୍ୟୁତ୍ ତାର ଚୋରି ଏବଂ ଅଧିକ ବିଦ୍ୟୁତ୍‌ର ଉପଯୋଗ ତୁଳନାରେ ବର୍ତ୍ତମାନ ରହିଥିବା ସବ୍-ଷ୍ଟେସନଗୁଡ଼ିକ ବିଦ୍ୟୁତ୍ ବ୍ୟବହାରକାରୀଙ୍କର ଚାହିଦା ମେଣ୍ଟାଇ ପାରୁନଥିବାରୁ ଏ ପ୍ରକାର ପରିସ୍ଥିତି ଉପୁଜିଥିବା ବିଦ୍ୟୁତ୍ ବୋର୍ଡ଼ କର୍ତ୍ତୃପକ୍ଷ ପ୍ରକାଶ କରିଥିଲେ। ଅବଶ୍ୟ ପର୍ଯ୍ୟାପ୍ତ ବର୍ଷା ପରେ ବିଦ୍ୟୁତ୍ ପ୍ରକଳ୍ପ ବନ୍ଧଗୁଡ଼ିକରେ ଜଳପତନ ବୃଦ୍ଧି ହେଲେ, ଏହି ଅବସ୍ଥାର କିଛିଟା ଉନ୍ନତି ହେବ ବୋଲି ସେମାନେ ପ୍ରକାଶ କରିଥିଲେ।

ଅନ୍ୟମାନଙ୍କ ମଧ୍ୟରେ ଏହି ସମୀକ୍ଷା ବୈଠକରେ ସମୀକ୍ଷା କମିଟିର ସଭ୍ୟମାନେ ଅବକାରୀ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ, ବାଣିଜ୍ୟ ଓ ପରିବହନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ମହାନନ୍ଦ, ସମ୍ବଲପୁର ଓ କୁଚିଣ୍ଡାର ବିଧାୟକ ଦ୍ୱୟ ଏବଂ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ ପ୍ରତିନିଧି ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ।

## ଗୁରୁତ୍ୱପୂର୍ଣ୍ଣ ଗ୍ରାମାଞ୍ଚଳ ରାସ୍ତା ଓ ପୋଲ ନିର୍ମାଣ ପାଇଁ ପ୍ରଶାସନିକ ମଞ୍ଜୁରୀ

ଗଞ୍ଜାମ ଜିଲ୍ଲାର ଦେଙ୍ଗାଓସ୍ତାଠାରୁ ନିମାଖଣ୍ଡି ପେଣ୍ଠ ରାସ୍ତାର ଉନ୍ନତି ଏବଂ ପୋଲ ନିର୍ମାଣ ନିମନ୍ତେ ଅର୍ଥ ବିଭାଗର ସହମତିକ୍ରମେ ଗ୍ରାମ୍ୟ ଉନ୍ନୟନ ବିଭାଗରୁ ଏକ କୋଟି ୮ ଲକ୍ଷ ୨୬ ହଜାର ୪୦୦ ଟଙ୍କା ବ୍ୟୟରେ ଏକ ପ୍ରକଳ୍ପ ପାଇଁ ପ୍ରଶାସନିକ ମଞ୍ଜୁରୀ ପ୍ରଦାନ କରାଯାଇଛି। ସେହିପରି ଜିଲ୍ଲାର ବ୍ରହ୍ମପୁର, ଚିକିଟି, ବେଲୁଆ, କଇରା, ଧୂମା, ବଙ୍କିପୁର, ପାରଳାଖେମୁଣ୍ଡି ରାସ୍ତାର ଉନ୍ନତି ପାଇଁ ୪୯ ଲକ୍ଷ ୧୦ ହଜାର ଟଙ୍କାର ସଂଶୋଧିତ ଅଟକଳରୁ ପ୍ରଶାସନିକ ମଞ୍ଜୁରୀ ମିଳିଛି।

କୋରାପୁଟ ଜିଲ୍ଲାର ଡାବୁଗାଁ–ବୋରିଗାଁ ରାସ୍ତାର ୯ କି.ମି.ଠାରେ ଭେଲାରୀ ନାଳା ଉପରେ ଏକ ନିମଜ୍ଜନଶୀଳ ସେତୁ ପାଇଁ ୨୯ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟ ଅଟକଳ ମଧ୍ୟ ପ୍ରଶାସନିକ ମଞ୍ଜୁରୀ ଲାଭ କରିଛି।

କେନ୍ଦୁଝର ଜିଲ୍ଲାର ଉଖୁଣ୍ଡା–ଶିଳଟିଆ ରାସ୍ତାରେ ଦେଉଳିଯୋଡ଼ା ନଦୀ ଉପରେ ଏକ ନିମଜ୍ଜନଶୀଳ ସେତୁ ପାଇଁ ୧୫ ଲକ୍ଷ ୩୨ ହଜାର ୩୦୦ ଟଙ୍କାର ଏକ ପ୍ରକଳ୍ପକୁ ପ୍ରଶାସନିକ ମଞ୍ଜୁରୀ ମିଳିଛି।

ବଲାଙ୍ଗୀର ଜିଲ୍ଲାର ବଲାଙ୍ଗୀର–ଚନ୍ଦନଭାଟୀ ରାସ୍ତାର ୧୧ ରୁ ୨୦ କି.ମି. ପର୍ଯ୍ୟନ୍ତ ରାସ୍ତାର ଉନ୍ନତି ପାଇଁ ୧୪ ଲକ୍ଷ ୩୭ ହଜାର ଟଙ୍କା ବ୍ୟୟ ଅଟକଳକୁ ପ୍ରଶାସନିକ ମଞ୍ଜୁରୀ ଦିଆଯାଇଛି। ସେହିପରି ଜିଲ୍ଲାର ଖପରାଖୋଲ–ଝରିଆ ରାସ୍ତାର ୪ କି.ମି.ରୁ ୧୫ କି.ମି. ପର୍ଯ୍ୟନ୍ତ ଉନ୍ନୟନ ପାଇଁ ୧୪ ଲକ୍ଷ ୯୬ ହଜାର ୩୦୦ ଟଙ୍କା ପ୍ରଶାସନିକ ମଞ୍ଜୁରୀ ଲାଭ କରିଛି।

## ପୁରୀଠାରେ ଖୁବ୍ ଶୀଘ୍ର ଶିଳ୍ପାଞ୍ଚଳ ପ୍ରତିଷ୍ଠା କରାଯିବ

ପୁରୀ ସହରରେ ଖୁବ୍ ଶୀଘ୍ର ଶିଳ୍ପାଞ୍ଚଳ ପ୍ରତିଷ୍ଠା କରିବା ପାଇଁ ଚୂଡ଼ାନ୍ତ ନିଷ୍ପତ୍ତି ନିଆଯାଇଥିବା ଶିଳ୍ପ ମନ୍ତ୍ରୀ ଶ୍ରୀ ଦିଲ୍ଲୀପ ରାୟଙ୍କ ସୂତ୍ରରୁ ପ୍ରକାଶ।

ଏହି ଶିଳ୍ପାଞ୍ଚଳ ପ୍ରତିଷ୍ଠା ପାଇଁ ବାଲୁଖଣ୍ଡ ଖାସମହାଲ ଅନ୍ତର୍ଗତ ପି.ଏଚ୍. ଡି. ପମ୍ପ ହାଉସ୍ ଓ ସଂସ୍କୃତ ବିଶ୍ୱବିଦ୍ୟାଳୟ ମଧ୍ୟବର୍ତ୍ତୀ ଦଶ ଏକର ଜମି ବିଶିଷ୍ଟ ଯାଗା ରଖାଯାଇଛି। ଏହି ଜମି ଏକର ପ୍ରତି ଏକ ଲକ୍ଷ ଟଙ୍କା ମୂଲ୍ୟରେ ଶିଳ୍ପ ଉନ୍ନୟନ ନିଗମକୁ ହସ୍ତାନ୍ତର କରିବା ପାଇଁ ପୁରୀ ପୌର ପରିଷଦ ଅଧ୍ୟକ୍ଷ ସମ୍ମତି ପ୍ରଦାନ କରିଥିବା ଉକ୍ତ ସୂତ୍ରରୁ ପ୍ରକାଶ। ଶିଳ୍ପ ଉନ୍ନୟନ ନିଗମ ନିଜ ଖର୍ଚ୍ଚରେ ଉକ୍ତ ଜମିକୁ ସମତଳ କରିବା ସହ ଆବଶ୍ୟକୀୟ ଜଳ ନିଷ୍କାସନ ବ୍ୟବସ୍ଥା, ରାସ୍ତାଘାଟ ନିର୍ମାଣ, ବିଦ୍ୟୁତ୍ ଓ ଜଳ ଯୋଗାଣ ଆଦି ଆନ୍ତର୍ନିର୍ମାଣ ଉନ୍ନତିବିଧାନ କରି, ଉନ୍ନୟନ ପ୍ଲଟ୍ ଆକାରରେ ଆଗ୍ରହୀ ଉଦ୍ୟୋଗକାରୀଙ୍କୁ ପ୍ରତି ଏକର ପିଛା ପାଞ୍ଚ ଲକ୍ଷ ଟଙ୍କାରେ ବିକ୍ରି କରାଯିବା ପାଇଁ ନିଷ୍ପତ୍ତି ହୋଇଛି। ପ୍ରସ୍ତାବିତ ନୂତନ ଶିଳ୍ପାଞ୍ଚଳରେ ଫେବ୍ରିକେସନ୍, ମୋଟର ଗାଡ଼ିର ବଡ଼ି ନିର୍ମାଣ, ଦନ୍ତଶିଳ୍ପ, ବରଫ କଳ ଏବଂ ମାଛ ଏବଂ ଚିଙ୍ଗୁଡ଼ି ମହଜୁଦ୍ ବ୍ୟତୀତ ଶୀତଳ ଭଣ୍ଡାର ଶିଳ୍ପ ୟୁନିଟ୍‌ମାନ ସ୍ଥାପନ ପାଇଁ ନିଷ୍ପତ୍ତି ନିଆଯାଇଛି। 'ବଡ଼ି' ନିର୍ମାଣ ପାଇଁ ଯେଉଁ ମୋଟର ଗାଡ଼ିଗୁଡ଼ିକ ଆସିବ, ସେଗୁଡ଼ିକର ପାର୍କିଂ ପାଇଁ ଆବଶ୍ୟକୀୟ ଅଧିକ ଜମି ଯୋଗାଇ ଦେବା ପାଇଁ ପୌର ଅଧ୍ୟକ୍ଷ ସମ୍ମତି ପ୍ରଦାନ କରିଛନ୍ତି। ଉଦ୍ୟୋଗକାରୀଙ୍କୁ ପ୍ଲଟ୍ ଦେବା ପାଇଁ ଗଠିତ କମିଟିରେ ପୁରୀ ଜିଲ୍ଲାପାଳ ଏବଂ ପୁରୀ ପୌର ଅଧ୍ୟକ୍ଷଙ୍କୁ ସଭ୍ୟଭାବେ ମନୋନୀତ କରାଯିବା ପାଇଁ ସ୍ଥିର ହୋଇଛି। ଶିଳ୍ପାଞ୍ଚଳ ପାଇଁ ମନୋନୀତ ଜମିକୁ ଆଗାମୀ ଛଅ ମାସ ମଧ୍ୟରେ ଆବଶ୍ୟକୀୟ ଉନ୍ନତି କରିବା ପାଇଁ ବିହିତ ପଦକ୍ଷେପ ନେବାକୁ ଶିଳ୍ପ ମନ୍ତ୍ରୀ ଶ୍ରୀ ରାୟ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଛନ୍ତି।

ପୁରୀଠାରେ ଶିଳ୍ପାଞ୍ଚଳ ପ୍ରତିଷ୍ଠା ପାଇଁ ସ୍ଥାନୀୟ ବିଧାୟକ ଶ୍ରୀ ଉମା ବଲ୍ଲଭ ରଥ ଏବଂ ପୌର ଅଧ୍ୟକ୍ଷ ଶ୍ରୀ ମହେଶ୍ୱର ମହାନ୍ତିଙ୍କ ଅନୁରୋଧକ୍ରମେ ଶିଳ୍ପ ମନ୍ତ୍ରୀ ଶ୍ରୀ ରାୟ ପୁରୀ ଯାଇ ଶିଳ୍ପ ଉନ୍ନୟନ ନିଗମର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ, ପୁରୀ ଜିଲ୍ଲାପାଳ, ଅତିରିକ୍ତ ଶିଳ୍ପ ନିର୍ଦ୍ଦେଶକ, ପୁରୀ ପୌର ପରିଷଦର କାର୍ଯ୍ୟନିର୍ବାହୀ ଅଧିକାରୀ, ଓ.ଏ.ଏସ୍.ଏମ୍.ର ସମ୍ପାଦକ ଏବଂ ସ୍ଥାନୀୟ ଶିଳ୍ପ ଅଧିକାରୀ, ଉଦ୍ୟୋଗକାରୀଙ୍କ ସହ ବିଶଦ ବିଷୟର ବିମର୍ଶ କରିଥିଲେ ଏବଂ ସେମାନଙ୍କ ସହ ଶିଳ୍ପାଞ୍ଚଳ ପାଇଁ ଉପଯୁକ୍ତ ସ୍ଥାନ ନିରୂପଣ ପାଇଁ ବିଭିନ୍ନ ସ୍ଥାନ ବୁଲି ଦେଖିବା ପାଇଁ ଚୂଡ଼ାନ୍ତ ନିଷ୍ପତ୍ତିରେ ଉପନୀତ ହୋଇଥିଲେ।

ସୂଚନାଯୋଗ୍ୟ ଯେ ରାଜ୍ୟର ଜିଲ୍ଲା ସଦର ମହକୁମାମାନଙ୍କରେ ପୁରୀ ଏକମାତ୍ର ଜିଲ୍ଲା ସଦର ମହକୁମା, ଯେଉଁଠାରେ ଏ ପର୍ଯ୍ୟନ୍ତ "ଶିକ୍ଷାଞ୍ଚଳ" ପ୍ରତିଷ୍ଠା ହୋଇପାରି ନାହିଁ । ଏଥିପାଇଁ ଲୋକ ପ୍ରତିନିଧି, ସ୍ଥାନୀୟ ଶିକ୍ଷୋଦ୍ୟୋଗୀ, ଉଦ୍ୟୋଗକାରୀ ସଙ୍ଘ ଏବଂ ଜନସାଧାରଣଙ୍କ ପକ୍ଷରୁ ବରାବର ଦାବୀ ହୋଇ ଆସୁଥିଲା । ଶିକ୍ଷାଞ୍ଚଳ ପ୍ରତିଷ୍ଠା ପାଇଁ ଶିକ୍ଷୋଦ୍ୟୋଗୀମାନଙ୍କ ଦ୍ୱାରା ଗ୍ରହଣୀୟ ମୂଲ୍ୟରେ, ସରକାରଙ୍କ ପକ୍ଷରୁ ଉପଯୁକ୍ତ ଜମି ଯୋଗାଣ ହୋଇପାରୁ ନଥିବା ଯୋଗୁଁ ଶିକ୍ଷାଞ୍ଚଳ ପ୍ରତିଷ୍ଠା ହୋଇପାରୁ ନଥିଲା । ଶିଳ୍ପ ମନ୍ତ୍ରୀ ଶ୍ରୀ ରାୟଙ୍କ ଉଦ୍ୟମ ଫଳରେ ବର୍ତ୍ତମାନ ଶିକ୍ଷାଞ୍ଚଳ ପ୍ରତିଷ୍ଠା ହେବାକୁ ଯାଉଥିବାରୁ ଜିଲ୍ଲାର ଦୀର୍ଘ ଦିନର ଅଭାବ ପୂରଣ ହୋଇପାରିବ । ସେଥିପାଇଁ ସବୁ ମହଲରେ ଆନନ୍ଦର ବାତାବରଣ ଖେଳିଯାଇଛି ।

## ରାଜ୍ୟକୁ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଣ ପରିମାଣକୁ ବୃଦ୍ଧି କରାଯାଉ

ବର୍ତ୍ତମାନ କେନ୍ଦ୍ର ପକ୍ଷରୁ ରାଜ୍ୟକୁ ଦିଆଯାଉଥିବା ଅତ୍ୟାବଶ୍ୟକ ସାମଗ୍ରୀର ପରିମାଣକୁ ଆବଶ୍ୟକତାମତେ ବୃଦ୍ଧି କରାନଗଲେ ସାଧାରଣ ବଣ୍ଟନ ବ୍ୟବସ୍ଥାର ପୁନର୍ବିନ୍ୟାସ ବା ସୁଦୃଢ଼ୀକରଣ କାର୍ଯ୍ୟକ୍ରମ ସଫଳ ହୋଇପାରିବ ନାହିଁ ବୋଲି ରାଜ୍ୟ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଦୃଢ଼ ମତ ବ୍ୟକ୍ତ କରିଛନ୍ତି । ଓଡ଼ିଶାକୁ ମାସିକ ଅନ୍ୟୁନ ୩୦ ହଜାର ମେଟ୍ରିକ୍ ଟନ୍ ଗହମ ଏବଂ ୨୫ ହଜାର କିଲୋ ଲିଟର କିରୋସିନି ତେଲ ଯୋଗାଇ ଦେବା ପାଇଁ ସେ କେନ୍ଦ୍ର ସରକାରଙ୍କ ନିକଟରେ ଦାବୀ କରିଛନ୍ତି । ବର୍ତ୍ତମାନ ଓଡ଼ିଶାକୁ ମାସକୁ ୨୦ ହଜାର ମେଟ୍ରିକ୍ ଟନ୍ ଗହମ ଓ ୧୬.୬୨୦ କିଲୋ ଲିଟର କିରୋସିନି ଯୋଗାଇ ଦିଆଯାଉଛି ।

ସମ୍ପ୍ରତି କଲିକତାଠାରେ କେନ୍ଦ୍ର ବେସାମରିକ ଯୋଗାଣ ଏବଂ ଖାଉଟୀ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କମାଲୁଦ୍ଦିନ୍ ଅହମ୍ମଦଙ୍କ ପୌରହିତ୍ୟରେ ଅନୁଷ୍ଠିତ ପୂର୍ବାଞ୍ଚଳ ଖାଦ୍ୟ ମନ୍ତ୍ରୀମାନଙ୍କ ସମ୍ମିଳନୀରେ ଯୋଗଦେଇ ଶ୍ରୀ ହରିଚନ୍ଦନ ଏହା କହିଛନ୍ତି । କେନ୍ଦ୍ର ସରକାରଙ୍କ ସାଧାରଣ ବଣ୍ଟନ ବ୍ୟବସ୍ଥାର ପୁନର୍ବିନ୍ୟାସ କାର୍ଯ୍ୟକ୍ରମ ଆଲୋଚନାରେ ଅଂଶ ଗ୍ରହଣ କରି ସେ କହିଛନ୍ତି ଯେ ଗ୍ରାମାଞ୍ଚଳର ଗରିବ ତଥା ତଫସିଲଭୁକ୍ତ ଜାତି ଏବଂ ଉପଜାତିର ଲୋକମାନଙ୍କ ଚାହିଦା ମେଣ୍ଟାଇବା ପାଇଁ ରିହାତି ମୂଲ୍ୟରେ ଆବଶ୍ୟକମତେ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇ ଦେବା ପାଇଁ କେନ୍ଦ୍ର ସରକାର ସମୁଚିତ ବ୍ୟବସ୍ଥା କରିବା ଆବଶ୍ୟକ । ଓଡ଼ିଶାରେ ବର୍ତ୍ତମାନ ଭ୍ରାମ୍ୟମାଣ ଗାଡ଼ି ଜରିଆରେ ସାପ୍ତାହିକ ହାଟମାନଙ୍କରେ ଏହି ଶ୍ରେଣୀର ଲୋକମାନଙ୍କୁ ରିହାତି ମୂଲ୍ୟରେ ଚାଉଳ ଯୋଗାଇ ଦିଆଯାଉଥିବା ସେ ଉଲ୍ଲେଖ କରି ଏହା କେନ୍ଦ୍ର ସରକାରଙ୍କ ପ୍ରବର୍ତ୍ତିତ ଲୋକଙ୍କ ନିକଟରେ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଣ କାର୍ଯ୍ୟକ୍ରମର ଅନୁରୂପ ବୋଲି ସେ କହିଥିଲେ । ରାଜ୍ୟରେ ଭ୍ରାମ୍ୟମାଣ ଗାଡ଼ି ଜରିଆରେ ସାପ୍ତାହିକ ହାଟମାନଙ୍କରେ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଣ କାର୍ଯ୍ୟକ୍ରମ ଅତ୍ୟନ୍ତ ଫଳପ୍ରଦ ହେଉଥିବା ଦୃଷ୍ଟିରୁ ଏହାକୁ ଗ୍ରାମାଞ୍ଚଳରେ ଅଧିକ ଭାବେ ସମ୍ପ୍ରସାରିତ କରିବା ଆବଶ୍ୟକତା ରହିଛି ବୋଲି ସେ କହିଛନ୍ତି । ଏଥିପାଇଁ ଆଉ ଅଧିକ ୩୦ ଗୋଟି ଭ୍ରାମ୍ୟମାଣ ଗାଡ଼ି ରାଜ୍ୟକୁ ଯୋଗାଇଦେବା ନିମନ୍ତେ ସେ କେନ୍ଦ୍ର ନିକଟରେ ଦାବୀ ଉପସ୍ଥାପନ କରିଥିଲେ । କେନ୍ଦ୍ର ସରକାର ଏ ପ୍ରସ୍ତାବରେ ପ୍ରାୟ ସମ୍ମତ ହୋଇଥିବା ଶ୍ରୀ ହରିଚନ୍ଦନ ପ୍ରକାଶ କରିଛନ୍ତି ।

ସମନ୍ୱିତ ଆଦିବାସୀ ଉନ୍ନୟନ ବ୍ଲକ୍ ଏବଂ ମରୁଡ଼ି ପ୍ରବଣ (ଡି:ପି:ଏ:ପି:)ମାନଙ୍କରେ ରିହାତି ମୂଲ୍ୟରେ ଅତ୍ୟାବଶ୍ୟକ ସାମଗ୍ରୀ ଲୋକଙ୍କ ପାଖରେ ସୁବିଧାରେ ପହଞ୍ଚାଇବା ଉଦ୍ଦେଶ୍ୟରେ କେନ୍ଦ୍ର ସରକାର ସମଗ୍ର ଦେଶରେ ସାଧାରଣ ବଣ୍ଟନ ବ୍ୟବସ୍ଥାର ପୁନର୍ବିନ୍ୟାସ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସୂଚନାଯୋଗ୍ୟ ଯେ ରାଜ୍ୟରେ ବର୍ତ୍ତମାନ ୧୧୮ଟି ବ୍ଲକ୍‌କୁ ଆଇ:ଟି:ଡି:ଏ: ଏବଂ ୩୧ଟି ବ୍ଲକ୍ ଡି:ପି:ଏ:ପି: ବ୍ଲକ୍ ଘୋଷଣା କରାଯାଇଛି । ୩୧ଟି ଡି:ପି:ଏ:ପି: ବ୍ଲକ୍ ମଧ୍ୟରୁ ୧୪ଟି ବ୍ଲକ୍ ଆଇ:ଟି:ଡି:ଏ: ବ୍ଲକ୍‌ରେ ଅନ୍ତର୍ଭୁକ୍ତ ହୋଇଯାଇଛି। ଫଳରେ ରାଜ୍ୟର ଅବଶିଷ୍ଟ ୨୫ଟି ମରୁଡ଼ି ପ୍ରବଣ ବ୍ଲକ୍ ଏ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହେବା ପାଇଁ ନିଷ୍ପତ୍ତି ନିଆଯାଇଛି । କେନ୍ଦ୍ର ସରକାରଙ୍କ ନୂତନ କାର୍ଯ୍ୟକ୍ରମ ଅନୁଯାୟୀ ସେ ସବୁ ବ୍ଲକ୍‌ମାନଙ୍କରେ ଲୋକମାନଙ୍କୁ ରିହାତି ଦରରେ ଚାଉଳ, ଗହମ ଯୋଗାଣ ବ୍ୟତୀତ ଆଉ କେତେକ ଅତ୍ୟାବଶ୍ୟକ ସାମଗ୍ରୀ ଲୋକଙ୍କୁ ଯୋଗାଇ ଦିଆଯିବ । ଏ ସବୁ ବ୍ଲକ୍‌ରେ ଲୋକଙ୍କୁ ଚାଉଳ ଯୋଗାଣ ପରିମାଣକୁ ବୃଦ୍ଧି କରାଯାଉଛି ଏବଂ ଏ ବାବଦକୁ ଅଧିକା ଚାଉଳ ରାଜ୍ୟରେ ଆସି ପହଞ୍ଚି ଯାଇଛି ବୋଲି ଶ୍ରୀ ହରିଚନ୍ଦନ ପ୍ରକାଶ କରିଛନ୍ତି ।

ସମ୍ମିଳନୀରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଜାଲ୍ ପରିଚୟପତ୍ରକୁ ନିର୍ମୂଳ କରିବା ସହ ଅସଲ, ଖାଉଟୀମାନଙ୍କୁ ନୂତନ ପରିଚୟପତ୍ର ବଣ୍ଟନ ସମ୍ପର୍କରେ ସବିଶେଷ ଆଲୋଚନା ହୋଇଥିଲା । ରାଜ୍ୟରେ ଏ ଦିଗରେ ବିହିତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରାଯାଇଛି ବୋଲି ଶ୍ରୀ ହରିଚନ୍ଦନ ପ୍ରକାଶ କରିଥିଲେ ।

## ସମାଜ ଉପରେ ସାହିତ୍ୟର ପ୍ରଭାବ ସମ୍ପର୍କରେ ବ୍ୟାପକ ଗବେଷଣା ହେବା ଉଚିତ

—ମନ୍ତ୍ରୀ ଶ୍ରୀ କର

ସମାଜ ଓ ଜନ ଜୀବନକୁ ସାହିତ୍ୟ ଯେପରି ପ୍ରଭାବିତ କରୁଛି ତାହାର ଏକ ତୁଳନାତ୍ମକ ବିଶ୍ଲେଷଣ ପାଇଁ ଗବେଷକମାନେ ଚେଷ୍ଟା କରିବା ଉଚିତ ବୋଲି ରାଜ୍ୟ ସଂସ୍କୃତି ଓ ସୂଚନା ମନ୍ତ୍ରୀ ଶ୍ରୀ ଶରତ କୁମାର କର ମତବ୍ୟକ୍ତ କରିଛନ୍ତି ।

ସମ୍ପ୍ରତି ବି: ଜେ: ବି: କଲେଜ ପରିସରରେ ଅନୁଷ୍ଠିତ ଡକ୍ଟର ବିଜୟ କୁମାର ମହାନ୍ତିଙ୍କ 'ଓଡ଼ିଆ ଉପନ୍ୟାସରେ ରାଜନୈତିକ ଚେତନା' ଶୀର୍ଷକ ନିବନ୍ଧ ପୁସ୍ତକର ଉନ୍ମୋଚନ ଉତ୍ସବରେ ମନ୍ତ୍ରୀ ଶ୍ରୀ କର ଉପରୋକ୍ତ ମତ ପ୍ରକାଶ କରିଥିଲେ । ସେ କହିଲେ ଯେ, ରାଜନୀତି ଓ ସାହିତ୍ୟ ପରସ୍ପର ଭାବରେ ଜଡ଼ିତ ହୋଇଥିବାରୁ ଓଡ଼ିଆ ସାହିତ୍ୟରେ ରାଜନୈତିକ ସ୍ୱର ଗୁଞ୍ଜରିତ ହେବା ସ୍ୱାଭାବିକ । ମାତ୍ର ଏ ସବୁ ରାଜନୈତିକ ସ୍ୱରର ଅଧ୍ୟୟନ ଓ ଅନୁଶୀଳନ ନିମନ୍ତେ ଗବେଷକମାନେ ଯଥାର୍ଥ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ଏଭଳି ରାଜନୈତିକ ଚେତନା ସମ୍ବନ୍ଧୀୟ ପୁସ୍ତକ ବାହାରିବା ଓଡ଼ିଆ ସାହିତ୍ୟିକଙ୍କ ପକ୍ଷରେ ଏକ ଶୁଭ ସୂଚନା ବୋଲି ଶ୍ରୀ କର ମନ୍ତବ୍ୟ କରିଥିଲେ ।

ବିଶିଷ୍ଟ ସମାଲୋଚକ ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀ ଏ ଉତ୍ସବରେ ଯୋଗଦେଇ କହିଲେ ଯେ, ଗାଣିତ ଓ ଗଭୀର ଅନୁଶୀଳନ ନିବନ୍ଧ ରଚନାକୁ ବିମଣ୍ଡିତ କରିଥାଏ । ରାଜନୀତି ସହ ସମ୍ପୃକ୍ତ ହୋଇ ଲୋକମାନଙ୍କର ରାଜନୈତିକ ଉପନ୍ୟାସଗୁଡ଼ିକର ପର୍ଯ୍ୟାଲୋଚନା କରିବା ନିଶ୍ଚିତ ଭାବେ କଷ୍ଟକର ଓ ସେ ଏଥିପାଇଁ ଡକ୍ଟର ମହାନ୍ତିଙ୍କ ଉଦ୍ୟମକୁ ସାଧୁବାଦ ଜଣାଇଥିଲେ ।



ମୁଖ୍ୟମନ୍ତ୍ରୀ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ମହେନ୍ଦ୍ରଗିରି ଆଦିମ ଅଧିବାସୀ ମହାସଂଘ ସଦସ୍ୟମାନଙ୍କ ସହିତ ଆଲୋଚନା କରୁଛନ୍ତି (୧୩/୮)।



ସ୍ୱାଧୀନତା ଦିବସ ପାଳନ ଅବସରରେ ବଲାଙ୍ଗୀରଠାରେ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଦାସିରାମ ମାଝୀ କଣ୍ଟାବାଞ୍ଜି ବିଜ୍ଞାପିତ ଅଞ୍ଚଳ ପରିଷଦର କାର୍ଯ୍ୟନିର୍ବାହୀ ଅଧିକାରୀ ଶ୍ରୀ ଦେବେନ୍ଦ୍ର ପାଣିଗ୍ରାହୀ ଓ ଉପ ନଗରପାଳ ଶ୍ରୀ ଘନଶ୍ୟାମ ଗୁପ୍ତାଙ୍କୁ ରନିଂ ସିଲଡ୍ ପ୍ରଦାନ କରୁଛନ୍ତି।



ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ୨ଟି ବିଭାଗର ୨୦-ଦଫା କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରୁଛନ୍ତି (୪/୮)।



ଭୁବନେଶ୍ୱରଠାରେ କମ୍ପ୍ୟୁଟର ଉପରେ ଆଧାରିତ 'ସୂଚନା ବୈଷୟିକ ଜ୍ଞାନ କୌଶଳ' ସମ୍ପର୍କୀୟ ଆଧୁନିକ ଉପକରଣ ପ୍ରଦର୍ଶନୀକୁ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ବୁଲି ଦେଖୁଛନ୍ତି (୨୮/୮)।

ଗବେଷକ ଡଃ ବିଜୟ କୁମାର ମହାନ୍ତି ଏ ପୁସ୍ତକ ସମ୍ପର୍କରେ ସମ୍ପୃକ୍ତ ସୂଚନା ଦେଇ ତାଙ୍କୁ ଏ କାର୍ଯ୍ୟ ସମ୍ପନ୍ନ କରିବାକୁ ସାତବର୍ଷ ସମୟ ଲାଗିଥିଲା ବୋଲି ପ୍ରକାଶ କରିବା ସଙ୍ଗେ ସଙ୍ଗେ ଗବେଷଣାମୂଳକ ପୁସ୍ତକଗୁଡ଼ିକର ପ୍ରସାରଣ ସମ୍ପର୍କରେ ସରକାରୀ ପଦକ୍ଷେପ ନେବାକୁ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ସମାଲୋଚକ ନାଟ୍ୟକାର ଡଃ ନାରାୟଣ ଶତପଥୀ କହିଲେ ଯେ, ଏହି ନିବନ୍ଧ ପୁସ୍ତକଟି ଅନେକ ଉପାଦେୟ ତଥ୍ୟରେ ପରିପୂର୍ଣ୍ଣ ଏବଂ ଜନସାଧାରଣ ପାଠକ ପାଇଁ ଏହା ଯେପରି ଆବଶ୍ୟକ, ଛାତ୍ର, ଶିକ୍ଷକ, ଗବେଷକ ସମସ୍ତଙ୍କ ପାଇଁ ଏହା ମଧ୍ୟ ସେତିକି ମୂଲ୍ୟବାନ ।

ବିଃ ଜେଃ ବିଃ କଲେଜ ଅଧ୍ୟକ୍ଷ ଡଃ ଗଙ୍ଗାଧର ସାହୁ ଉତ୍ସବରେ ଅଧ୍ୟକ୍ଷତା କରି କହିଲେ ଯେ, ଏହି ପୁସ୍ତକଟିରେ ଭାରତୀୟ ତଥା ଆଞ୍ଚଳୀୟ ଜାତୀୟ ଆନ୍ଦୋଳନର ଚିତ୍ର ବିଶେଷ ଭାବରେ ଆଲୋଚିତ ହୋଇଛି । ସାହିତ୍ୟ ଅଧ୍ୟାପକ ହୋଇଥିଲେ ମଧ୍ୟ ରାଜନୈତିକ ଚେତନା ଉପରେ ଆଧାରିତ ଏହି ପୁସ୍ତକ ରଚନା ଲେଖକଙ୍କର ଏକ ବଳିଷ୍ଠ ପଦକ୍ଷେପ ।

ଜନତା ଦଳ ରାଜ୍ୟ ଶାଖା ସମ୍ପାଦକ ତଥା ସାହିତ୍ୟିକ ଶ୍ରୀ ବିଷ୍ଣୁ ପ୍ରସାଦ ବାହାଲିଆ ଏ ନିବନ୍ଧ ପୁସ୍ତକର ଉପାଦେୟତା ସମ୍ପର୍କରେ ଆଲୋଚନା କରିଥିଲେ । କୋଣାର୍କ ପବ୍ଲିଶସ୍ ତରଫରୁ ତଥା ଏ ପୁସ୍ତକର ପ୍ରକାଶକ ଶ୍ରୀ ଚନ୍ଦ୍ରଶେଖର ପାଢ଼ୀ ଧନ୍ୟବାଦ ଅର୍ପଣ କରିଥିଲେ । ପ୍ରାରମ୍ଭରେ କଣ୍ଠ ଶିଳ୍ପୀ କୁମାରୀ କଲ୍ୟାଣୀ ମିଶ୍ରଙ୍କ ପରିଚାଳନାରେ ଆବାହନୀ ସଙ୍ଗୀତ ଗାନ କରାଯାଇଥିଲା । ଏ ଉତ୍ସବରେ ସାହିତ୍ୟିକ ଡଃ ଅମୂଲ୍ୟକୃଷ୍ଣ ମିଶ୍ର, ଡଃ କୃଷ୍ଣଚନ୍ଦ୍ର ମିଶ୍ର, ଅଧ୍ୟାପକ ବସନ୍ତ ତ୍ରିପାଠୀ, ଡଃ ରବୀନ୍ଦ୍ର କୁମାର ପ୍ରହରାଜଙ୍କ ସମେତ ବହୁ ଅଧ୍ୟାପକ, ସାହିତ୍ୟିକ, ସାମ୍ବାଦିକ, ବୁଦ୍ଧିଜୀବୀ, ଛାତ୍ର ଛାତ୍ରୀ ଯୋଗ ଦେଇଥିଲେ ।



ଭୁବନେଶ୍ୱର ବିଃ ଜେଃ ବିଃ କଲେଜଠାରେ ପ୍ରାଧ୍ୟାପକ ଡକ୍ଟର ବିଜୟ କୁମାର ମହାନ୍ତିଙ୍କ ଲିଖିତ "ଓଡ଼ିଆ ଉପନ୍ୟାସରେ ରାଜନୈତିକ ଚେତନା" ପୁସ୍ତକକୁ ରାଜ୍ୟ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉନ୍ମୋଚନ କରୁଛନ୍ତି ।

# ଅଗଷ୍ଟ ମାସର ମୁଖ୍ୟ ସମ୍ବାଦ

୧-୮-୧୯୯୨– **ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଲଳିତ କଳା ଏକାଡେମୀ**ର ଶାଖା କାର୍ଯ୍ୟାଳୟ **ସମ୍ବଲପୁର**ଠାରେ ଖୋଲିବା ପାଇଁ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ।

ଫୁଲବାଣୀ ଜିଲ୍ଲା ବୌଦ ସହରରେ **ସବ୍‌ଜଜ୍ କୋର୍ଟର ନୂତନ ଗୃହ** ଉଦ୍‌ଘାଟନ ।

୨-୮-୧୯୯୨–**ପଞ୍ଚାୟତରାଜ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ**ଙ୍କ ଦ୍ୱାରା ବାରଙ୍ଗଠାରେ **ଏକ ଲକ୍ଷ ୨୦ ହଜାର ଟଙ୍କା** ବ୍ୟୟରେ ନିର୍ମିତ ବାରଙ୍ଗ ପଞ୍ଚାୟତ ସମିତିର **ସଭା ଗୃହ** ଉଦ୍‌ଘାଟନ ।

୩-୮-୧୯୯୨–**ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ**ଙ୍କ ଦ୍ୱାରା ଭୁବନେଶ୍ୱରସ୍ଥ ମଞ୍ଚେଶ୍ୱର ଶିଳ୍ପାଞ୍ଚଳରେ **୪ କୋଟି ୫ ଲକ୍ଷ ଟଙ୍କା** ବ୍ୟୟରେ ପ୍ରସ୍ତାବିତ **ଇଲେକ୍ଟ୍ରୋନିକ୍ସ ମେଣ୍ଟେନାନ୍‌ସ ଓ ମରାମତି ନିଗମ**ର ଭୂମି ପୂଜା ଉତ୍ସବ

୬-୮-୧୯୯୨–**ସାତ ଶହ କୋଟି ଟଙ୍କା** ବ୍ୟୟରେ **ଓଡ଼ିଶାର ତୃତୀୟ ଇସ୍ପାତ କାରଖାନା** ନିର୍ମାଣ କରିବା ପାଇଁ ନିଷ୍ପତ୍ତି ।

୭-୮-୧୯୯୨–**ଯୋଜନା ଓ ସମନ୍ୱୟ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ**ଙ୍କ ଦ୍ୱାରା ଭୁବନେଶ୍ୱର ପ୍ରଦର୍ଶନୀ ପଡ଼ିଆରେ **ହସ୍ତତନ୍ତ ଓ ହସ୍ତଶିଳ୍ପ ପ୍ରଦର୍ଶନୀ** ଉଦ୍‌ଘାଟନ ।

ରାଜ୍ୟ ମୁଖ୍ୟ ଶାସନ ସଚିବ **ଶ୍ରୀ ରମାକାନ୍ତ ରଥ**ଙ୍କ ଦ୍ୱାରା ଭୁବନେଶ୍ୱରସ୍ଥ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରଠାରେ ଚିତ୍ତାକର୍ଷକ **ଚିତ୍ର ଓ ଭାସ୍କର୍ଯ୍ୟ ପ୍ରଦର୍ଶନୀ** ଉଦ୍‌ଘାଟନ ।

୯-୮-୧୯୯୨–**ଭାରତ ଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବର ଶୁଭାରମ୍ଭ ।**

୧୧-୮-୧୯୯୨–**ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର**ଙ୍କ ଦ୍ୱାରା ନବ ନିର୍ମିତ **ମାହାଙ୍ଗା ତହସିଲ୍ ଅଫିସ୍ କାର୍ଯ୍ୟାଳୟ ଗୃହ** ଉଦ୍‌ଘାଟନ ।

୧୨-୮-୧୯୯୨–**ପଞ୍ଚାୟତରାଜ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ**ଙ୍କ ଦ୍ୱାରା ଆସିକାଠାରେ ଗଞ୍ଜାମ ଜିଲ୍ଲାର **ଦ୍ୱିତୀୟ ଦୁଗ୍ଧ ଶୀତଳୀକରଣ କେନ୍ଦ୍ର** ଉଦ୍‌ଘାଟନ ।

୧୬-୮-୧୯୯୨–**ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା**ଙ୍କ ଦ୍ୱାରା ବୋଲଗଡ଼ ବ୍ଲକ୍‌ର **ମାଣିବନ୍ଧ ପଞ୍ଚାୟତ ଗୃହ** ଉଦ୍‌ଘାଟନ ।

୧୯-୮-୧୯୯୨–ଭାରତର **ନବମ ଉପରାଷ୍ଟ୍ରପତି** ଭାବେ **ଶ୍ରୀ କେ: ଆର୍: ନାରାୟଣନ୍** ନିର୍ବାଚିତ ।

**ପୂର୍ବାଞ୍ଚଳ ଥ୍ରୋ-ବଲ୍ ଏସୋସିଏସନ୍‌**ର **ଅଧ୍ୟକ୍ଷ** ଭାବେ **ପୁରୀ ବିଧାୟକ ଶ୍ରୀ ଉମାବଲ୍ଲଭ ରଥ** ମନୋନୀତ ।

୨୦-୮-୧୯୯୨–ଭୁବନେଶ୍ୱର **ସୂଚନା ଭବନ**ଠାରେ **ରାଜ୍ୟସ୍ତରୀୟ ସଦ୍‌ଭାବନା ଦିବସ** ପାଳନ ।

୨୧-୮-୧୯୯୨–**ବାଣପୁର ମୁନିସିଫ୍ କୋର୍ଟର ନୂତନ ଗୃହ** ଉଦ୍‌ଘାଟନ ।

ଭୁବନେଶ୍ୱର ବରମୁଣ୍ଡା ହାଉସିଂ କଲୋନୀଠାରେ **ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା**ଙ୍କ ଦ୍ୱାରା **କର୍କଟ ଗବେଷଣା କେନ୍ଦ୍ର** ଉଦ୍‌ଘାଟନ ।

୨୨-୮-୧୯୯୨–**ରାଉରକେଲା ଇସ୍ପାତ କାରଖାନାର ଆଧୁନିକୀକରଣ** କାର୍ଯ୍ୟକ୍ରମର ଦ୍ୱିତୀୟ ପର୍ଯ୍ୟାୟରେ ଏକ ନୂଆ **ସିଣ୍ଟର ପ୍ଲାଣ୍ଟ ପ୍ରତିଷ୍ଠା** ପାଇଁ ଭିତ୍ତିପ୍ରସ୍ତର **ସ୍ଥାପନ ।**

୨୪-୮-୧୯୯୨–**ଶହୀଦ୍ ଜସ୍ୱୀ ରାଜଗୁରୁଙ୍କ ବ୍ରୋଞ୍ଜ୍ ପ୍ରତିମୂର୍ତ୍ତି ସ୍ଥାପନ ଓ ରାଜ୍ୟସ୍ତରୀୟ ଜୟନ୍ତୀ** ଉତ୍ସବ ପାଳନ ପାଇଁ **ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର**ଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ବୈଠକରେ ନିଷ୍ପତ୍ତି ।

୨୬-୮-୧୯୯୨–**ଦ୍ୱିତୀୟ ଇସ୍ପାତ କାରଖାନା** କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ **ପୂର୍ତ୍ତ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି**ଙ୍କ ଅଧ୍ୟକ୍ଷତାରେ **କଳିଙ୍ଗ ନଗର ଡେଭେଲପ୍‌ମେଣ୍ଟ୍ ଅଥରିଟି ବୋର୍ଡ଼** ଗଠିତ ।

୨୭-୮-୧୯୯୨–**କବି ଜୟଦେବ, ପଣ୍ଡିତ ନୀଳକଣ୍ଠ ଓ କବି ଗଙ୍ଗାଧର**ଙ୍କ ଉପରେ **ପ୍ରାମାଣିକ** ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ **ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର**ଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ **ଚଳଚ୍ଚିତ୍ର ପ୍ରସ୍ତୁତି** ଉପଦେଷ୍ଟା **କମିଟି** ବୈଠକରେ ନିଷ୍ପତ୍ତି ।

# ଫକୀର ମୋହନ : ନିଜସ୍ୱ କବିତାର ଦର୍ପଣରେ ନିଜେ

● ଶ୍ରୀ ବ୍ରଜନାଥ ରଥ

କବି ଚିରକାଳ ନିଜସ୍ୱ କବିତାର ଦର୍ପଣରେ ହିଁ ନିଜେ ପ୍ରତିଭାତ ହୋଇଥାଏ । ବିମ୍ବିତ ହୋଇଥାଏ ତା'ର ଜୀବନ ଓ ଜଗତ । ପରିବାର ଓ ସମାଜ । ଏହା କେତେବେଳେ ପ୍ରତ୍ୟକ୍ଷ ବା କେତେବେଳେ ପରୋକ୍ଷ । ଯେତେବେଳେ ଜଣେ ମୁଗ୍ଧ ପାଠକ ସମାଲୋଚକର ରହସ୍ୟ ଭେଦୀ ଦୃଷ୍ଟିକୋଣ ନେଇ, ଅନୁସନ୍ଧିତ୍ସୁ ମନର ଅନ୍ତର୍ଭେଦୀ ରଞ୍ଜନ-ରଶ୍ମି ପକାଇ କବି-ସୃଷ୍ଟିର ସେହି ରହସ୍ୟ ଭେଦ କରିବାକୁ ଚେଷ୍ଟା କରେ ସେତେବେଳେ ତା' ଆଗରେ ଉଦ୍‌ଘାଟିତ ହୁଏ କବି ଜୀବନର ବହୁ ଜ୍ଞାତ-ଅଜ୍ଞାତ ବିଚିତ୍ର ତଥ୍ୟ, ଯାହା ତା' ସୃଷ୍ଟିର ସ୍ତରେ ସ୍ତରେ ସ୍ୱର୍ଣ୍ଣରେଣୁ ଭଳି ଲୁକ୍କାୟିତ ଥାଏ । ରହସ୍ୟ-ଘନ ଅନ୍ଧାର ଭିତରେ ବନ୍ଦୀ ହୋଇଥିବା କବି ସତ୍ତାଟିକୁ ଖୋଜୁ ଖୋଜୁ ବିମୁଗ୍ଧ ବିସ୍ମୟରେ ଦେଖେ କେଉଁଠି ତାହା ଆନନ୍ଦମୟ କଳ୍ପଲୋକର ସଞ୍ଚାରୀ, କେଉଁଠି ଦାରୁଣ ମର୍ମଦାହରେ ଜର୍ଜରିତ; କେଉଁଠି ଅଦ୍ଭୁତ ଆଶା-ଆଲୋକରେ ଉଦ୍ଭାସିତ ତ, କେଉଁଠି ନିରାଶାର ଘନାନ୍ଧକାରରେ ନିମଜ୍ଜିତ; ପୁଣି କେଉଁଠି ପ୍ରେମ ଓ ଜୀବନର ବିଚିତ୍ର ଉଦ୍‌ଗାତା ତ, କେଉଁଠି ମୃତ୍ୟୁ-ଦେବତାର ସ୍ୱାଗତ ଗୀତିର ମୁଗ୍ଧ ଗାୟକ । ଜୀବନର ବିଚିତ୍ର ବର୍ଣ୍ଣା ଅନୁଭୂତି ଭିତରେ କବି ଯାହା ସୃଷ୍ଟି କରେ, ଯାହା ରୂପ ଦିଏ, ସେହି ଅନୁପମ ସୃଜନ-କଳା ଭିତରେ ସେ କେତେବେଳେ ନୈପଥ୍ୟ-ନାୟକ ଭାବରେ ଲୁଚି ରହିଯାଇଥାଏ ତାହା ସେ ନିଜେ ହୁଏତ ଜାଣିପାରେ ନାହିଁ, କିନ୍ତୁ ଉତ୍ସାହୀ ପାଠକ ବା ସନ୍ଧାନୀ ସମାଲୋଚକର ଅଣୁବୀକ୍ଷଣିକ ଦୃଷ୍ଟିର ଯବନିକା ଭିତରେ ସେ ଧରାପଡ଼ିଥାଏ ଏବଂ ତା'ର ନିଜସ୍ୱ ରୂପର ଆସିକ ପ୍ରତିବିମ୍ବ ଅତି ଅଦ୍ଭୁତ ଭାବରେ ଝଲସି ଉଠେ । ବହୁ ବର୍ଷ ଅତିକ୍ରାନ୍ତ ହେଲା ପରେ ବି ଆମେ ସେହି କବିତାର ଦର୍ପଣରେ ପ୍ରତିବିମ୍ବିତ କବିଟିକୁ ଭଲକରି ଚିହ୍ନିପାରୁ, ଶୁଣିପାରୁ ଏକଦା ତା' ଜୀବନର ସୁଖ ଦୁଃଖ, ଆଶା-ନିରାଶାର କାହାଣୀ ଏବଂ ଖୁବ୍ ଅନ୍ତରଙ୍ଗ ଭାବେ ଅନୁଭବ କରିପାରୁ ତା' ଅନୁଭୂତି ଲବ୍ଧ ଜୀବନର ସଂଗୁପ୍ତ ମର୍ମବାଣୀ । ଏହି ପରିପ୍ରେକ୍ଷୀରେ ଆଜି ଫକୀର ମୋହନଙ୍କ ମୃତ୍ୟୁର ଚଉରାଶୀ ବର୍ଷ ପରେ ଆମେ ଯଦି ତାଙ୍କର ଖୁରୋଟି ପ୍ରମୁଖ କବିତା ସଙ୍କଳନ 'ପୁଷ୍ପମାଳା', 'ଉପହାର', 'ଅବସର ବାସରେ' ଓ 'ପୂଜାଫୁଲ' ଗ୍ରନ୍ଥର ପୃଷ୍ଠା ପରେ ପୃଷ୍ଠା ଓଲଟାଉ ତା'ହେଲେ ଆମ ଆଖିରେ ପଡ଼ିବ ଏଭଳି ଅନେକ କବିତା, ଯାହା ଭିତରେ ଆପାତ ପ୍ରଚ୍ଛନ୍ନ ଭାବରେ ରହିଛି କବିଙ୍କ ବ୍ୟକ୍ତିଗତ ଭାବସତ୍ତା । ଏହି ବ୍ୟକ୍ତିଗତ କବି ସତ୍ତାର ରୂପ ଖୁବ୍ ନିଃସଙ୍ଗ, ଖୁବ୍ ଦୁଃଖୀ, ଖୁବ୍ କରୁଣ ଅଥଚ ଏକ ଅଦ୍ଭୁତ ଆତ୍ମ-ପ୍ରତ୍ୟୟରେ ସେ ଭାସ୍ୱର । କଥା ସମ୍ରାଟ ଫକୀର ମୋହନ ଓ ବ୍ୟାସକବି ଫକୀର ମୋହନଙ୍କ ଭିତରେ ତଫାତ୍ ଏଇଠି । କଥା ଓ କବିତା, ଉଭୟର ସ୍ରଷ୍ଟା ଜଣେ ହେଲେ ବି, ମନେ ହୁଅନ୍ତି ଯେମିତି ଦୁଇଟି ଚେତନା-ଜଗତର ଅଧିବାସୀ । କଥାକାର ଫକୀର ମୋହନଙ୍କ ଦୃଷ୍ଟିକୋଣ ତୀର୍ଯ୍ୟକ୍, ଭାଷା ଶାଣିତ, କଥନ ଭଙ୍ଗୀ ଲଘୁ ଓ ବକ୍ର ଏବଂ ସେ ଏକାନ୍ତ ଭାବେ ସମାଜମୁଖୀ । କିନ୍ତୁ କବି ଫକୀର ମୋହନଙ୍କ ଦୃଷ୍ଟିଭଙ୍ଗୀ ଏକାନ୍ତ କରୁଣ, ଭାଷା ପ୍ରାଞ୍ଜଳ, କଥନ ଶୈଳୀ ସରଳ ଓ ଋଜୁ ଏବଂ ସେ ସର୍ବୋତ୍‌ଭାବେ ଅନ୍ତର୍ମୁଖୀ । ଯେଉଁ କାବ୍ୟ ପୁରୁଷଟିକୁ ଆମେ ଏହି ଖୁରୋଟି ପ୍ରମୁଖ କବିତା ଗ୍ରନ୍ଥ ଭିତରେ ଭେଟୁ, ସେ ଏକ ଦୁଃଖୀ ମଣିଷ, ଏକ ରଣକ୍ଳାନ୍ତ ସୈନିକ । ଦୀର୍ଘକାଳ ଧରି ତା' ହୃଦୟ-କନ୍ଦରରେ ଲୁପିହୋଇ ରହିଥିବା ରାଶି ରାଶି ଦୁଃଖର ଅଲଙ୍ଘ୍ୟ ଅତଳାୟତନକୁ ଘୁଞ୍ଚାଇବାକୁ ଚେଷ୍ଟାକରି ସେ ଯେମିତି ଅମୃତ-ପ୍ଲାବିନୀ କବିତା-ନିର୍ଝରିଣୀର ଉତ୍ସ ସନ୍ଧାନ କରିଛି ଏବଂ ତା'ର କମଳ-ଶୀତଳ ଜଳ ରାଶିରେ ଆକଣ୍ଠ ଅବଗାହନ କରି ଅପାର ଆନନ୍ଦ ଲାଭ କରିଛି ।

ଏହି କବିତା ସଙ୍କଳନଗୁଡ଼ିକର ପ୍ରକାଶ କାଳ ୧୮୯୪ରୁ ୧୯୧୭ ମସିହା ମଧ୍ୟରେ । ୧୮୯୪ ମସିହା ଭାଦ୍ର ଶୁକ୍ଳ ଦଶମୀରେ ଫକୀର ମୋହନଙ୍କ ପ୍ରାଣପ୍ରିୟା ଦ୍ୱିତୀୟା ପତ୍ନୀ, କବିଙ୍କ କହିବାନୁଯାୟୀ ତାଙ୍କ ଗୃହ ପ୍ରାଙ୍ଗଣରେ ଲବଙ୍ଗଲତା, ଜୀବନର ଦାରୁଣ ନିଦାଘରେ ପୁଣ୍ୟତୋୟା ତରଙ୍ଗିଣୀ ଏବଂ ଯାହାଙ୍କୁ ଦେଖି ତାଙ୍କ ନେତ୍ରତୋଳା ତୃପ୍ତ ହେଉଥିଲା, ସେହି କୃଷ୍ଣକୁମାରୀଙ୍କର ୩୫ ବର୍ଷ ବୟସରେ ଅକାଳ ବିୟୋଗ ଘଟିଥିଲା । ଏହି ଦାରୁଣ ବିୟୋଗଜନିତ ଦାରୁଣ ଦୁଃଖରେ ଭାଙ୍ଗିପଡ଼ିଲେ କବି, ସେତେବେଳକୁ ତାଙ୍କ ବୟସ ୫୧ ବର୍ଷ ଏବଂ ସେ ବାର୍ଦ୍ଧକ୍ୟର ମୁଖଶାଳାରେ ଉପସ୍ଥିତ । ଏହାପରେ ଡୋମପଡ଼ା ରାଜାଙ୍କ ଦ୍ୱାରା ଭୁଲ ବୁଝାମଣାରୁ ପଦଚ୍ୟୁତ ହୋଇ ସେ ଆସି କିଛିକାଳ ଅବସ୍ଥାନ କଲେ କଟକରେ । ବ୍ୟାଧି ଓ ଅର୍ଥାଭାବ ଲାଗି ରହିଥାଏ । ଏକମାତ୍ର ପୁତ୍ର ମୋହିନୀ ମୋହନଙ୍କ ସହ ମନୋମାଳିନ୍ୟ ତାଙ୍କୁ କ୍ରମଶଃ ଅସହ୍ୟବୋଧ ହେଉଥାଏ । ଏହିଭଳି ଏକ ଦୁଃଖାବହ ଅବସ୍ଥାରେ ସେ ବାଲେଶ୍ୱର ଫେରିଆସି ୧୯୧୮ ଜୁନ୍ ୧୪ ତାରିଖରେ ପୃଥିବୀରୁ ବିଦାୟ ନେବା ପର୍ଯ୍ୟନ୍ତ ଦୀର୍ଘ ୧୩ ବର୍ଷ କାଳ ଏକାକୀ ନିଃସଙ୍ଗ ଜୀବନ ଯାପନ କଲେ । ସେ ଲେଖିଛନ୍ତି "ଏକାକୀ ରହିବା ମୋ ଭାଗ୍ୟଲିପିରେ ଲେଖାଅଛି । × × × ଏକାକୀ ଥିବାରୁ ଚିନ୍ତା କରିବାକୁ ଯଥେଷ୍ଟ ସମୟ ପାଏ । ମୁଁ ଚିରଦିନ ରୋଗୀ ଥିବାରୁ କର୍ମପଟୁ ନୁହେଁ । ମାତ୍ର ବ୍ୟାଧି ବିପଦ ସମୟରେ ମୋହର ଲେଖା ଟିକିଏ ଭଲ ହୁଏ ।" ତେଣୁ ୧୮୯୪ରେ ପ୍ରକାଶିତ ପ୍ରଥମ କବିତା ସଞ୍ଚୟନ 'ପୁଷ୍ପମାଳା'ଠାରୁ ୧୯୧୭ ମସିହାରେ ପ୍ରକାଶିତ 'ପୂଜାଫୁଲ' ପର୍ଯ୍ୟନ୍ତ ବିଭିନ୍ନ କବିତା-ସଙ୍କଳନଗୁଡ଼ିକରେ ଏକ

ପତ୍ନୀହରା, ନିଃସଙ୍ଗ ନିବାସୀ, ବିଷନ୍ନମନା, ଦୁଃଖୀ ଓ ଜରାଗ୍ରସ୍ତ କବିର ହୃଦୟାବେଗ ପ୍ରକାଶ ପାଇବା ସ୍ୱାଭାବିକ ।

'ଆତ୍ମ ଜୀବନ ଚରିତ'ର ଅନ୍ୟତ୍ର ସେ ଲେଖିଛନ୍ତି — "କେନ୍ଦ୍ରାପଡ଼ାରୁ ଆସିଲା ବେଳେ ମୋର ବୟଃକ୍ରମ ୬୭ ବର୍ଷ ହୋଇଥିଲା । ଏହାପରେ ମୁଁ ଆଉ କାହାରି ଅଧୀନରେ କର୍ମ ଗ୍ରହଣ କରିନାହିଁ । ବର୍ତ୍ତମାନ ମୋର କଟକ ବାଖରାବାଦ ଘରେ ରହିଲି । × × × ଏହି ଘରେ ମୋର ଶେଷ–ଜୀବନର ଅନେକଗୁଡ଼ିଏ କବିତା ଲେଖା ହୋଇଥିଲା । × × × ଅନେକ ମାସ ପର୍ଯ୍ୟନ୍ତ ମନଦେଇ ଦେଖିଛି, ପ୍ରତିଦିନ ସକାଳ ଠିକ୍ ୯ଟା ସମୟରେ ଯୋଡ଼ିଏ ହଳଦୀ ବସନ୍ତ ଆସି ପୁଷ୍ପୋଦ୍ୟାନ ମଧ୍ୟରେ କ୍ରୀଡ଼ାରେ ରତ ଥା'ନ୍ତି । ସେ ବିଷୟରେ ଗୋଟିଏ କବିତା ଲେଖିଲି । ଯୋଡ଼ିଏ କପୋତ ଆକାଶରେ କିପରି ଲଗାଲଗି ଭାବରେ ଉଡ଼ିଗଲେ, ସେ ବିଷୟରେ ଗୋଟିଏ କବିତା, ସନ୍ଧ୍ୟା ସମୟରେ କାଠଯୋଡ଼ି କୂଳ ପଥର ବନ୍ଧ ଉପରେ ବସିଛି, ମନରେ ଯେଉଁ ଭାବ ଉଦୟ ହେଲା, ତାହା ଗୋଟିଏ କବିତାରେ ଲିପିବଦ୍ଧ କଲି । "× × × ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ଥିଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦଜନକ କବିତା ଲେଖୁଥିଲି ।" ଫକୀର ମୋହନଙ୍କ ବାଲେଶ୍ୱରରେ ଶିକ୍ଷକତା ସମୟ ୧୮୬୪ରୁ ୧୮୭୧ — ପ୍ରାୟ ସାତ ବର୍ଷ । ତା'ପରେ ସେ ନୀଳଗିରିର ଦେୱାନ୍ ହୋଇ ଚାଲିଗଲେ । ଆତ୍ମ ଚରିତରେ ସେ ପୁନଶ୍ଚ ଲେଖିଛନ୍ତି, "ମୁଁ ବାଲେଶ୍ୱରରୁ ଚାଲିଆସି ଯେତେବେଳେ ଗଡ଼ଜାତମାନଙ୍କରେ କର୍ମ କରିବାକୁ ଗଲି, ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ୍ ହୋଇଗଲା, ଆଠ–ଦଶ ବର୍ଷ କାଳ ମୁଁ ଲେଖା ଛାଡ଼ିଦେଲି । ଢେଙ୍କାନାଳରେ ଥିବା ସମୟରେ ମୋର ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେବା ପାଇଁ ରାମାୟଣ, ମହାଭାରତ ଅନୁବାଦ ଆରମ୍ଭ କଲି । × × × ମୁଁ ଡୋମପଡ଼ାରେ ଦ୍ୱିତୀୟ ଥର କର୍ମ କରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣକୁମାରୀ ପରଲୋକ ଗମନ କଲେ । ମୋର ସେ ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା, ତାହା ହିଁ ମୁଁ 'ପୁଷ୍ପମାଳା' ଓ 'ଉପହାର' ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।

ଫକୀର ମୋହନ ବାଲେଶ୍ୱରରେ ଶିକ୍ଷକତା କରୁଥିବା ବେଳେ ଯେଉଁ "ଆମୋଦଜନକ" କବିତା ଲେଖି ପତ୍ରିକାରେ ପ୍ରକାଶ କରିଥିଲେ ତାହାର ଭାଗ୍ୟ କ'ଣ ହେଲା ଜଣାଯାଏ ନାହିଁ । କାରଣ ଉକ୍ତ କବିତା ସଙ୍କଳନଗୁଡ଼ିକରେ ସେଭଳି କୌଣସି "ଆମୋଦଜନକ" କବିତା ଥିବାର ପାଠକେ ଲକ୍ଷ୍ୟ କରିପାରିବେ ନାହିଁ । ବରଂ ସ୍ତ୍ରୀଙ୍କ ମୃତ୍ୟୁ ଯୋଗୁଁ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା ତାହା ହିଁ 'ପୁଷ୍ପମାଳା' ଓ 'ଉପହାର' ପୁସ୍ତକ ଦୁଇଟିରେ ବ୍ୟକ୍ତ ହୋଇଅଛି । ଏପରି କି ଏହି 'ଦାରୁଣ କଷ୍ଟ'ର କରୁଣ ସ୍ୱର 'ପୁଷ୍ପମାଳା'ରୁ ଆରମ୍ଭ ହୋଇ 'ଉପହାର' ଓ 'ଅବସର ବାସରେ' ବାଟ ଦେଇ ଲସି ଯାଇଛି 'ପ୍ରବାପୁଲ' ପର୍ଯ୍ୟନ୍ତ । ଯାହା ପାଠକର ହୃଦୟକୁ ମଧ୍ୟ ବେଳେବେଳେ ବିଚଳିତ ଓ ବିଗଳିତ କରିଦିଏ । ଯେଉଁ 'ଯୋଡ଼ିଏ ହଳଦୀ ବସନ୍ତ'ଙ୍କୁ ଦେଖି ସେ କବିତା ଲେଖିଥିଲେ ବୋଲି ଉଲ୍ଲେଖ କରିଛନ୍ତି, ତାହା 'ଅବସର ବାସରେ' କାବ୍ୟ ଗ୍ରନ୍ଥରେ 'ବିରହୀ ହଳଦୀ ବସନ୍ତ' ନାମରେ ପଢ଼ିଛି । ଏଥିରେ ଯେଉଁ ଯୋଡ଼ିଏ ହଳଦୀ ବସନ୍ତଙ୍କୁ ପାଠକ ଭେଟେ ସେ ଦୁହେଁ କବ ଦମ୍ପତି ନାଁ ଅନ୍ୟ କେହି ? 'କ୍ଷୁଦ୍ର ସେ ବିହଙ୍ଗମ ଦୀର୍ଘର ଜାତି/କାହୁଁ ଶିଖିଲା ଜାୟା–ପ୍ରେମ ଏ ନୀତି ?' କହିବା ଭିତରେ ନିଜର ପରଲୋକଗତା ଜାୟା ପ୍ରତି ଏକାନ୍ତିକ ପ୍ରୀତି ହିଁ ପ୍ରଦର୍ଶନ କରିଛନ୍ତି କବି ଫକୀର ମୋହନ । ଏଠି ଆମେ ଯେଉଁ କାବ୍ୟ ପୁରୁଷଙ୍କୁ ଭେଟୁ, ସେ ହଳଦୀ ବସନ୍ତର ପ୍ରତୀକ ଭିତରେ ନି... ଆତ୍ମପ୍ରକାଶ କରିଛନ୍ତି । ଏଠାରେ କାବ୍ୟରୂପ ଅପ୍ରତ୍ୟକ୍ଷ ହେଲେ ବି ପାଠକଙ୍କୁ ବୁଝିବାକୁ କଷ୍ଟ ହୁଏନା ଯୋଡ଼ିଏ ହଳଦୀ ବସନ୍ତ କିଏ ?

ସେମିତି 'ସାହାଡ଼ା ଗଛର କ୍ରନ୍ଦନ' କବିତାରେ 'ଲାଜକୁଳୀ ଲତିକା ଥିଲା ମୋର ପାଶେ/କାଟୁଥାଉଁ ଦୁହେଁ ଦିନ ମନର ଉଲ୍ଲାସେ ।' × × × 'ଲାଜକୁଳୀ ପଡ଼ିଥାଏ ମୋର ଗୋଡ଼ ତଳେ/ଖେଳି ଖେଳି ଦୁଇଗୋଟି ଫୁଲ ଧରି କୋଳେ ।' × × × 'ପ୍ରବଳ ପବନ ... ଗଲା କାହିଁ ଉଡ଼ି/ସାନ ସାନ ଫୁଲ ଦୁଇ ଛନ୍ତି ତଳେ ପଡ଼ି ।' × × × 'ଚାଲିଗଲା ନକହିଲା ମୋତେ ପଦେ କଥା/ଆହା ମୋର କାହିଁ ଗଲା ଲାଜକୁଳୀ ଲତା !' ଭିତରେ ଯେଉଁ ପ୍ରତୀକାତ୍ମକ ରୂପ ... ଭାବରେ ସ୍ପଷ୍ଟ ତାହା ଫକୀର ମୋହନ ନା ଅନ୍ୟ କେହି ? ଲାଜକୁଳୀ ଲତା ନିଶ୍ଚିତ ଭାବେ 'କୃଷ୍ଣକୁମାରୀ' ଏବଂ 'ସାନ ସାନ ଫୁଲ ଦୁଇଟି' କବିଙ୍କ ଦୁଇ ପୁତ୍ରକନ୍ୟା — ମୋହିନୀ ମୋହନ ଓ ସରୋଜିନୀ ।

'ଚନ୍ଦୁଆ ଚକୋଇ କଥା'ରେ ଯେଉଁଠି କବି ଲେଖୁଛନ୍ତି – '... ତା'ର ପିତାମାତା ସେ ଜାଣେ ନାହିଁ/ପିଲା କାଳରୁ ... କାହିଁ/ଥିଲା ଏକ ଚକୋଇ ବୁଢ଼ୀ ସେଠାରେ/ବଞ୍ଚାଇ ରଖିଥିଲା ... ଡେଣାରେ/କେତେ ଦିନରେ ବୁଢ଼ୀ ଚକୋଇ ମଲା/ପିଲା ... ଆଶା ଭରସା ଗଲା ।'/ ସେହି ବୁଢ଼ୀ ଚକୋଇ ପିତୃ–ମାତୃହୀନ ଅନାଥ ଫକୀର ମୋହନଙ୍କ ପିଲା ଦିନର ଏକମାତ୍ର ଆଶା ଭରସା ... ସ୍ଥଳୀ ପିତାମହୀ କୋଚିଲା ଦେଈ ବ୍ୟତୀତ ଅନ୍ୟ କିଏ ହୋଇପାରନ୍ତି ? ପୁଣି 'କେତେ କାଳରେ ଦିନେ ... ଚକୋଇ ଏକ ମିଳିଲା ପାଶେ/× × × ବାନ୍ଧିଲେ ବସା ଦୁହେଁ ... କରି/ମଣି ତାହାକୁ ସ୍ୱର୍ଗ ଭୁବନ ସରି ।' କହିବା ବେଳେ ଯେଉଁ 'ସ୍ୱର୍ଗ ଭୁବନ' ସୃଷ୍ଟିକାରିଣୀ ଚକୋଇକୁ ଭେଟୁ ସେ ନିଶ୍ଚିତ ଭାବେ କୃଷ୍ଣକୁମାରୀ ।

'କପୋତ–ସଙ୍ଗୀତ' କବିତାରେ ଯେଉଁ 'କପୋତ ... ଅବତାରଣା, ତହିଁରେ ପ୍ରତିବିମ୍ବିତ ଫକୀର ମୋହନଙ୍କ ... 'କାଳ–ଭୁଜଙ୍ଗ ଆସି କାହୁଁ ସେ ସ୍ଥାନ/ସଂହାରି କଲା ସେହି କପୋତୀ ପ୍ରାଣ ।/ବୃଦ୍ଧ କପୋତ ତହୁଁ ବିକଳ ମନେ/ପାଳେ ଶାବକ ... ପ୍ରାଣେ ଯତନେ ।/ଥୋକେ ଦିନାନ୍ତେ ବେନି ଶାବକ ବଢ଼ି/ମାୟା ... ମାୟା ଗଲେ ଦୂରକୁ ଉଡ଼ି ।/ଥାଏ କପୋତ ଏକା ... ନୀଡ଼ରେ/ବିକଳେ କାଟେ ଦିନ ଶୂନ୍ୟ ମନରେ ।' ଏଠାରେ 'କାଳଭୁଜଙ୍ଗ' — ମୃତ୍ୟୁ, 'କପୋତୀ' — କୃଷ୍ଣକୁମାରୀ, 'ବୃଦ୍ଧ କପୋତ' — ନିଜେ ଫକୀର ମୋହନ, 'ଶାବକ ବେନି' — କବିଙ୍କ ପୁତ୍ର–କନ୍ୟା ମୋହିନୀ ମୋହନ ଓ ସରୋଜିନୀ ରୂପରେ ପରୋକ୍ଷ ଭାବେ ଚିତ୍ରିତ ହୋଇଛନ୍ତି । ଶାବକ ବେନି ବଢ଼ି ମାୟା ନରଖି ଦୂରକୁ ଉଡ଼ିଯିବା ମୋହିନୀ ମୋହନଙ୍କ କାର୍ଯ୍ୟୋପଲକ୍ଷେ ଅନ୍ୟତ୍ର ବାସ ଏବଂ ସରୋଜିନୀଙ୍କ ବିବାହ ହିଁ ସୂଚୀତ କରେ ।

ଫକୀର ମୋହନଙ୍କ ଆଉ ଏକ କବିତା 'ବୁଢ଼ା ପଣ୍ଡାଏ' ... ଭିତରେ ବି ମୂର୍ତ୍ତ ହୋଇଛି କବିଙ୍କ ପ୍ରତିରୂପ । ନିଜକୁ 'ବୁଢ଼ା ପଣ୍ଡା' କହିବା ଭିତରେ ନିହିତ ରହିଛି ନିଜ ପ୍ରତି ଏକ ଅସହାୟ ତୁଚ୍ଛତାବୋଧ । ତଥାପି 'ଏକ ମାଳୁଣୀ ଝିଅ'ର ଆଗମନ ଏବଂ 'ଗଛର ଘଟା'କୁ ଝାଡ଼ିଝୁଡ଼ି ଦେଇ, ସ୍ନେହରେ ହାତ ବୁଲେଇ ବୁଢ଼ା ପଣ୍ଡାଙ୍କ ... ମୂଳେ ପାଣି ଢାଳିବା ଏବଂ ତା'ର ସେବା ପାଇଁ 'ବୁଢ଼ା ପଣ୍ଡାଙ୍କ'ର ... ପତର' ଗଜାଇବା ଓ 'ଫୁଲ ଫୁଟାଇଦେବା'ର ...

ନାହାନ୍ତି । ଏଠି 'ବୁଢା ପଳାଶ' ଓ 'ମାଲୁଣୀ ଝିଅ' କିଏ ବୁଝିବାକୁ ପାଠକଙ୍କୁ ଖୁବ୍ କଷ୍ଟ କରିବାକୁ ପଡେନାହିଁ । 'ଫୁଲ ଡାଳିଦେବା' ଭଳି ବ୍ୟଞ୍ଜନା ଧର୍ମୀ ଶବ୍ଦର ଅର୍ଥ ମଧ୍ୟ ସୁସ୍ପଷ୍ଟ ।

'ମୋ କ୍ଷୁଦ୍ର ତାରା' କବିତାରେ 'ଜ୍ୟୋତିର୍ମୟୀ, ଅପୂର୍ବ ସୁନ୍ଦରୀ' ସେହି ନକ୍ଷତ୍ରଟି କିଏ ଯାହାର 'ହୃଦୟ ଉଲ୍ଲାସକାରୀ' କରଣକୁ ଗ୍ରହି କବି ଆନନ୍ଦେ ବିଚରଣ' କରୁଥିଲେ ଏବଂ ସିଏ ହଜିଗଲା ପରେ 'ଅନ୍ଧପରି ବୁଲି ଦେଖି ଜୀବନଟା ସାରା' କହି 'ତାରା ହାଟ, ତାରା ନାଟ ବସିଛି ଆକାଶେ/ସେପରି ତାରା ତ ଆଉ ନଦେଖେ ନୟନେ,/ଥାଆନ୍ତୁ ନିଯୁତେ ତାରା କୋଟିଏ କୋଟିଏ/ମାତ୍ର ମୋର ବୋଲିବାକୁ ନାହିଁ ତ କେହିଏ' ବୋଲି ବିଳପି ଉଠିଛନ୍ତି ? ଏହି କବିତାର ଦର୍ପଣରେ ସ୍ପଷ୍ଟ ଚିତ୍ରିତ ହୋଇନାହିଁ ବୃଦ୍ଧ ଫକୀର ମୋହନଙ୍କ ବିରହୀ ହୃଦୟର ନିଜ ରୂପ ?

'ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ' କବିଙ୍କର ଏକ ଅନବଦ୍ୟ କବିତା । ନିଜକୁ 'ଜୀର୍ଣ୍ଣ ପଲ୍ଲବ'ର ଆସନରେ ବସାଇ 'ନବପର୍ଣ୍ଣ' ଦଳଙ୍କୁ 'ଆଶୀର୍ବାଦ' କରିବାର ପ୍ରତୀକ ଭିତରେ ପ୍ରବୀଣ କବି ଫକୀର ମୋହନ ଭବିଷ୍ୟତ ଆଶା-ଭରସାର ସ୍ଥଳ ଆଗନ୍ତୁକ ତରୁଣ ଦଳଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇ..." ଏବଂ 'ଆଶୀର୍ବାଦ, ଆଶୀର୍ବାଦ ନବପର୍ଣ୍ଣ ଦଳ/ଛାୟା ଦାନେ ହୁଅ ପାନ୍ଥ ପାଦପ ସଫଳ' ବୋଲି କହିବା ତାଙ୍କ ନିଷ୍କପଟ ଉଦାର ହୃଦୟର ସ୍ଥିର ଚିହ୍ନ ବହନ କରେ । ଏ ଉକ୍ତିର ସତ୍ୟତା ତଥା ଆନ୍ତରିକତାର ପ୍ରମାଣ ପାଇବାକୁ ହେଲେ ଆମକୁ ପଢିବାକୁ ହେବ କବିଙ୍କ ସ୍ୱ ଅନୁଭୂତି ସମ୍ପନ୍ନ ରମ୍ୟ ରଚନା 'ମୋ ଜୀବନ ଉପରେ ନବୀନର ପ୍ରଭାବ' ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ତରୁଣ ଜୀବନରେ ଫକୀର ମୋହନଙ୍କ ସହ ସମ୍ପର୍କର ସ୍ମୃତି କଥାକୁ ଭିତ୍ତି କରିବାକୁ ପଡିବ ।

'ମୁଁ ହାଟ ବାହୁଡ଼ା' ଏକ ଭିନ୍ନ ସ୍ୱାଦର କବିତା । ଅନ୍ୟାନ୍ୟ ଆତ୍ମଧର୍ମୀ କବିତାଠାରୁ ଏହାର ଆବେଦନ ସ୍ୱତନ୍ତ୍ର । ଏଠି ଆମେ ଯେଉଁ ଫକୀର ମୋହନଙ୍କୁ ଭେଟୁ ସେ ଏକ ଭିନ୍ନ ଫକୀର ମୋହନ । ବିରହୀ, ସହୀହରା ଫକୀର ମୋହନ ନୁହଁନ୍ତି । ସେ ସଂସାର ହାଟର ଜଣେ ହାଟୁଆ । ଏହି କବିତାରେ ତାଙ୍କ ସମାଜମୁଖୀ ଦୃଷ୍ଟିକୋଣ ଓ ବ୍ୟଙ୍ଗ ଖୁବ୍ ତୀର୍ଯ୍ୟକ୍ ଓ ତୀବ୍ର । ସେ ଏ କବିତାର ମୁଖ୍ୟ ନାୟକ । ହାଟର ସେ କେବଳ ଜଣେ ଗ୍ରାହକ ନୁହନ୍ତି, ଜଣେ ଦୋକାନୀ ମଧ୍ୟ । ପ୍ରଥମେ ଗ୍ରାହକ ଓ ପରେ ଦୋକାନୀ ହେବାର ବିଚିତ୍ର ଅନୁଭୂତି ଓ ଅଭିଜ୍ଞତାରେ ପୁଷ୍ଟ ଏ କବିତା । "ହାଟେ ବୁଲି ବୁଲି ବୁଝିଲି ସ୍ଥାନ/ମୁଁ ମଧ୍ୟ ମେଲିଲି ଗୋଟେ ଦୋକାନ ।/ଝାଡ଼ିଝୁଡ଼ି ଦେଇ ଦୋକାନ ସ୍ଥଳ/ ଗୋଦାମେ ଭରିଲି ସାହିତ୍ୟ ମାଲ ।/ବିଲାତି ମାଲକୁ ନାହିଁ ତ ପୁଞ୍ଜି/ଦେଶୀ ମାଲ ଦେଲି ଗୋଦାମେ ଗୁଞ୍ଜି ।/ ଦେଶୀ ସାହିତ୍ୟ ଯେ ବଣିଜ କଲା/ଜାଣିଥିବ ସେହି ଲୋକଟି ମଲା । ଏହି ପଂକ୍ତିଗୁଡ଼ିକ ଭିତରେ ଲେଖକ ଫକୀର ମୋହନଙ୍କ ବ୍ୟର୍ଥ ବ୍ୟବସାୟୀ ଜୀବନର କରୁଣ ଚିତ୍ର ଫୁଟି ଉଠି ନାହିଁ କି ? ଦେଶୀ ସାହିତ୍ୟର ବଣିଜ କରୁଥିବା ଲୋକଟି ଆଜି ମଧ୍ୟ ମଲା ଭଳି ପଡ଼ି ନାହିଁ କି ?

ପରୋକ୍ଷ ଭାବେ ବିସିତ ହୋଇଥିବା ଫକୀର ମୋହନଙ୍କ ଜୀବନର ଚିତ୍ରରୂପ ତାଙ୍କ କବିତାରେ କେତେବେଳେ 'ହଳଦୀ ବସନ୍ତ', 'ଅନାହତ ଶଙ୍ଖ', 'ଚକୁଆ-ଚକୋଇ', 'କପୋତ-କପୋତୀ', 'ବୁଢା ପଳାଶ', 'କ୍ଷୁଦ୍ର ତାରା', 'ଜୀର୍ଣ୍ଣ ପଲ୍ଲବ' ବା 'ହାଟ ବାହୁଡ଼ା' ବାଟୋଇ ଇତ୍ୟାଦି ନାନା ପ୍ରତୀକ ମାଧ୍ୟମରେ ପ୍ରକାଶ ପାଇଥିଲେ ବି ବହୁ ସ୍ଥଳରେ ପ୍ରତ୍ୟକ୍ଷ ଭାବେ ସେ ଆପଣାକୁ ବ୍ୟକ୍ତ କରିଛନ୍ତି । ତାଙ୍କର ସେହି ବ୍ୟକ୍ତ ବକ୍ତବ୍ୟ ଭିତରେ ଅଙ୍କିତ ହୋଇଯାଇଛି ତାଙ୍କ ମନୋଗତ ଭାବ ଓ ଅନୁଭବ ଯାହା ଏକାନ୍ତ ଭାବେ ଆପଣାର । 'ଭବ-ଭାବନା' କବିତାଟି ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । 'ଥିଲି ଯେବେ ଉପଯୁକ୍ତ ଅର୍ଥ ଉପାର୍ଜନେ/ବେଢ଼ିଥିଲେ ଚଉପାଶେ ପ୍ରିୟ ପରିଜନେ ।/ଆନନ୍ଦ ଉତ୍ସବ ପୂର୍ଣ୍ଣ ଥିଲା ମୋ ଆଳୟ/ଶିଶୁ ପୁତ୍ର-କନ୍ୟା ମିଷ୍ଟଭାଷୀ ସୁଧାମୟ ।' ବୋଲି ସ୍ୱୀକାର କରୁଥିବା କବି ଜରାଜୀର୍ଣ୍ଣ ଅବସ୍ଥାରେ ଅସହାୟ ଭାବରେ କହୁଛନ୍ତି – "ସୁଧାମୟ ଭାଷୀ ଥିଲେ ଯେଉଁ ଶିଶୁମାନେ/ପ୍ରଫୁଲ୍ଲିତ ବଦନ ଏବେ କର୍କଶ ବଚନେ ।/ପ୍ରେମାଳାପେ ବନ୍ଧୁପଣେ ବସୁଥିଲେ ପାଶେ/ ଲୋଡ଼ିଲେ ହେଁ ସେମାନଙ୍କୁ ଦେଖେ ନାହିଁ ବାସେ ।" ପୁନଶ୍ଚ 'ମିଷ୍ଟ କଥା' କବିତାରେ କବିଙ୍କ ଏ ଭାବନା ଆହୁରି ସ୍ପଷ୍ଟ ଓ ତୀବ୍ର ଭାବେ ପ୍ରକାଶିତ । ଯେତେବେଳେ ସେ ଅତି ଦୁଃଖର ସହିତ କହନ୍ତି – "ଯାହା ପାଇଁ କରିଛି ମୁଁ ଅସାଧ୍ୟ ସାଧନା/ଦିବା ନିଶି କରେ ଯା'ର ଉନ୍ନତି କାମନା/ଧିକ୍ ! ଧିକ୍ ! ସେହି ମୋତେ କହେ କଟୁ କଥା/ମୋ ଜୀବନେ ନାହିଁ ତା'ର ମାୟା ବା ମମତା ।" ଏ ଖେଦୋକ୍ତି କାହା ପାଇଁ ପ୍ରଯୁଜ୍ୟ ? କାହା ଉଦ୍ଦେଶ୍ୟରେ ସହୀହରା, ନିଃସଙ୍ଗ, ବୃଦ୍ଧ ଫକୀର ମୋହନଙ୍କ ଏ ବାକ୍ୟବାଣ ? ତାଙ୍କ ଶେଷ ଜୀବନ ସମ୍ପର୍କରେ ଅବହିତ ପ୍ରତ୍ୟେକ ପାଠକ ଏଥିରୁ ଅନୁମାନ କରିପାରିବେ ପିତା-ପୁତ୍ରଙ୍କ ମଧ୍ୟରେ ସମ୍ପର୍କ କିଭଳି ତିକ୍ତ ଥିଲା ।

କିନ୍ତୁ ଅପର ପକ୍ଷରେ ନିଜର ଏକମାତ୍ର ପୁତ୍ରବଧୂ ହିରଣ୍ମୟୀଙ୍କ ଉପରେ ଥିଲା ତାଙ୍କର ଅଗାଧ ସ୍ନେହ ଓ ଅଖଣ୍ଡ ବିଶ୍ୱାସ । ସେ ତାଙ୍କ ଶେଷ ଇଚ୍ଛାପତ୍ର (Will)ରେ ପୁତ୍ର ମୋହିନୀ ମୋହନଙ୍କୁ ତ୍ୟାଜ୍ୟପୁତ୍ର ବୋଲି ଘୋଷଣା କରି ପୁତ୍ରବଧୂଙ୍କୁ ନିଜର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ଅଧିକାରିଣୀ କରାଇ ଯାଇଥିଲେ । 'ଅବସର ବାସରେ' ଗ୍ରନ୍ଥର ଶେଷ କବିତା 'ଆଦେଶ' ଯେ ଏହି ପୁତ୍ରବଧୂଙ୍କ ପ୍ରତି ଉଦ୍ଦିଷ୍ଟ ଏହା ସୁସ୍ପଷ୍ଟ । ଅତି କରୁଣ ଭାବରେ ଅସହାୟ ଫକୀର ମୋହନ ଲେଖିଛନ୍ତି – "ଅୟି ବତ୍ସେ ! ଦେଖୁଛ ତ ଜଗତକୁ ଚାହିଁ/ତୋର ବିନା ଦ୍ୱିତୀୟ ମୋ ସାହା କେହି ନାହିଁ ।/ଦୟାବତୀ ! ଗୁଣବତୀ ! ଭକ୍ତି ପରାୟଣା,/ଏକମାତ୍ର ତୁହି ମୋର ଜୀବନ ସାନ୍ତ୍ୱନା ।" ଏହା କହିବା ସଙ୍ଗେ ସଙ୍ଗେ 'ଆଦେଶ' ଛଳରେ ବିକଳ ଅନୁରୋଧ କରିଛନ୍ତି – "ଭିନ୍ନ ଭିନ୍ନ ହେଲେ ମୋର ଜରାଜୀର୍ଣ୍ଣ ଅଙ୍ଗ/ଅନ୍ଧକାରେ ଗଲେ ଉଡ଼ି ଜୀବନ-ପତଙ୍ଗ/ x x x ବର୍ଷରେ ବା ବର୍ଷାନ୍ତେ କେବେହେଲେ ଥରେ/ସ୍ମରଣ କରିବୁ ମୋତେ ଭକ୍ତିରେ ମନରେ ।/ନିଦର୍ଶନ ରଖିବୁରେ ସେ ପବିତ୍ର ସ୍ଥାନେ/ ଏ ସଙ୍କେତ କଥା ବତ୍ସେ ବୁଝ ଅନୁମାନେ ।" ଏହି କାବ୍ୟ ପଂକ୍ତି ଭିତରେ ପୁତ୍ରବଧୂଙ୍କୁ "ଏକମାତ୍ର ତୁହି ମୋର ଜୀବନ ସାନ୍ତ୍ୱନା" ବୋଲି ସମ୍ବୋଧନ କରି "ନିଦର୍ଶନ ରଖିବୁରେ ସେ ପବିତ୍ର ସ୍ଥାନେ"ର ଆଦେଶ (?) ହେବା ରହସ୍ୟପୂର୍ଣ୍ଣ । ଏଠାରେ ଯେଉଁ "ପବିତ୍ର ସ୍ଥାନ" କଥା କୁହାଯାଇଛି ତାହା ନିଶ୍ଚୟ "ଶ୍ମଶାନ" ଏବଂ ନିଦର୍ଶନ ରଖିବାର ଅର୍ଥ "ସମାଧି ନିର୍ମାଣ" କରିବାର ସଙ୍କେତ ସୂଚୀତ । କିନ୍ତୁ ଫକୀର ମୋହନଙ୍କ ମୃତ୍ୟୁ ପରେ ତାଙ୍କ "ଦୟାବତୀ, ଗୁଣବତୀ ଓ ଭକ୍ତି ପରାୟଣା" ପୁତ୍ରବଧୂ କୌଣସି "ନିଦର୍ଶନ" ରଖିଥିବାର ପ୍ରମାଣ ମିଳିନାହିଁ । ବରଂ ଅଳ୍ପ କେତେ ବର୍ଷ ତଳେ ବାଲେଶ୍ୱରର 'ଫକୀର ମୋହନ ସାହିତ୍ୟ ପରିଷଦ' ପକ୍ଷରୁ ମଲ୍ଲିକାଶପୁରର କେତେଜଣ ବୟୋବୃଦ୍ଧ ବ୍ୟକ୍ତିଙ୍କ ସହାୟତାରେ କବିଙ୍କ ପବିତ୍ର ଦାହସ୍ଥଳୀ ନିର୍ଣ୍ଣୟ କରାଯାଇ କ୍ଷୁଦ୍ର ସମାଧିଟିଏ ନିର୍ମାଣ କରାଯାଇଛି ।

କୌଣସି ସତ୍ ଓ ମହତ୍ କବି କେବେ 'ଯଶପ୍ରାର୍ଥୀ' ହୋଇ କାବ୍ୟ ରଚନା କରନ୍ତି 'ନାହିଁ । ତାହା କେବଳ 'ମନ୍ଦକବି' ପକ୍ଷରେ

ସମ୍ପର୍କ । ନିଜକୁ ପ୍ରକାଶ କରିବାର ଏବଂ ନିଜ ଭିତର ଦେଇ ନିଜର ସମସ୍ତ ଓ ଜଗତ୍‌କୁ ପ୍ରକାଶ କରିବାର ଦୁର୍ବାର ଓ ଅଦମ୍ୟ ଇଚ୍ଛା ଜଣଙ୍କୁ କବି କରିଥାଏ । ଫକୀର ମୋହନ ସେହିଭଳି ଜଣେ କବି, ଯିଏ କବି ହେବା ପାଇଁ କବିତା ଲେଖୁନଥିଲେ ବା ଯଶପ୍ରାର୍ଥୀ ହୋଇ କବିତା ଲେଖୁନଥିଲେ ବରଂ ନିଷ୍କାପଟ ଭାବରେ ଆତ୍ମପ୍ରକାଶର ସ୍ପୃହା ନେଇ ସେ ନିଜର ବହୁବର୍ଣ୍ଣିଳ ଅନୁଭୂତିଗୁଡ଼ିକୁ ଯେଉଁ କାବ୍ୟ ରୂପ ଦେଲେ, ତାହା ହିଁ ତାଙ୍କୁ ଜଣେ କବି ଭାବରେ ପ୍ରତିଷ୍ଠିତ କରାଇ ପାରିଛି । କିନ୍ତୁ ଆଧୁନିକ ଓଡ଼ିଆ କାବ୍ୟ–ମନ୍ଦାକିନୀର ଭଗୀରଥ ଭାବରେ ରାଧାନାଥଙ୍କୁ ଯେତେବେଳେ ସ୍ମରଣ କରାଯାଏ, ସେତେବେଳେ ଫକୀର ମୋହନଙ୍କୁ ଉପଯୁକ୍ତ ମୂଲ୍ୟ ଦିଆଯାଏ ନାହିଁ । ତାଙ୍କୁ କଥା ସମ୍ରାଟ ବା ଓଡ଼ିଆ କଥା ସାହିତ୍ୟର ଜନକ କହି ଆମେ ସମ୍ମାନ ଦେଉ । କିନ୍ତୁ ଜଣେ କଥାକାର ଭିତରେ ଲୁଚି ବସିଥିବା ନିଛକ କବିଟିର କଥା ଭୁଲିଯାଉ । ସେଥିପାଇଁ ଖୁବ୍ ଦୁଃଖର ସହିତ କବି ଫକୀର ମୋହନ 'ମୋ ଗୀତର ଭଣ୍ଡାର'ରେ ଲେଖିଛନ୍ତି — "ଆପଣା ମନକୁ ଗାଏଁ, ଗାଇବା ଅଭ୍ୟାସ/ଶୁଣୁ ବା ନଶୁଣୁ କେହି ନାହିଁ ଚିନ୍ତା ଲେଶ ।/ × × × ସମସ୍ତେ ଗାଆନ୍ତି ଗୀତ, ମୁଁ ତ ଅଛି ଗାଇ/ଏଥିରେ ତ କ୍ଷତି–ବୃଦ୍ଧି ଦେଖେ ନାହିଁ ଭାଇ ।/ × × × ଗୀତ ଗାଇବାକୁ ଇଚ୍ଛାକରେ ଯେଉଁ ଜନ/କେ ଲୋକ କରିବା କିଆଁ ତାକୁ ନିବାରଣ ?/ମୋ ବିଶ୍ୱାସ ଜଗତରେ କବି ସର୍ବଲୋକ/କେହି ବା ବିଶେଷ କେହି ଅଳପ ମାତ୍ରକ ।/ଯେତେ କାଳ ଥାଏ ମୋର ଥିବ ପିଣ୍ଡେ ପ୍ରାଣ/ଇଚ୍ଛା ବସି ବସି କରୁଥିବି ଗୀତ ଗାନ ।/ଯଦ୍ୟପି ଗାଇବ ମୋହ ଗୀତ କେହି ଲୋକ/ମଣିବି ଅବଶ୍ୟ ଶ୍ରମ–ଜୀବନ ସାର୍ଥକ ।" ହଁ କବି ଫକୀର ମୋହନଙ୍କ ଜୀବନ ସାର୍ଥକ ତ ନିଶ୍ଚୟ । ଅସାର୍ଥକ ବୋଲି କିଏ କହିବ ? ତା' ହୋଇଥିଲେ ଦୀର୍ଘ ୧୦୦ ବର୍ଷ ପରେ ବି ସେ ଆମ ସ୍ମରଣକୁ ଆସନ୍ତେ କାହିଁକି ? ତାଙ୍କ ସମୟରେ କେତେଜଣ ଲୋକ ବା କାଳର ପରଦା ଟେକି ଆମ ସ୍ମୃତିର କୋଠରୀ ଭିତରକୁ ପଶି ଆସିପାରୁଛନ୍ତି । କବିଗୁରୁ ରବୀନ୍ଦ୍ରନାଥ ଯେତେବେଳେ ଲେଖିଥିଲେ — "ଆଜିଠାରୁ ଶହେ ବର୍ଷ ପରେ/କିଏ ତୁମେ ପଢ଼ ବସି ଏ ମୋର କବିତା/କୌତୂହଳ ଭରେ ?" ସେ ହୁଏତ ଜାଣିଥିଲେ ତାଙ୍କ କବିତା ଶହେ ବର୍ଷ ପରେ ବି କାହାରି ଦ୍ୱାରା ପଠିତ ହେବ ଏବଂ ଶହେ ବର୍ଷ ତଳର ଜଣେ ତରୁଣ କବିର 'ଜାଗୃତି ଗୀତ', 'ଆନନ୍ଦର ଅଭିବାଦନ' ନେଇ 'ଭ୍ରମରର ଗୁଞ୍ଜନ' ଓ 'ପତ୍ରର ମର୍ମର' ଭିତରେ ଶହେ ବର୍ଷ ପରେ ବି ହୃଦୟେ ହୃଦୟେ ଗୁଞ୍ଜରିତ ହେବ । କିନ୍ତୁ କବି ଫକୀର ମୋହନଙ୍କ କଣ୍ଠସ୍ୱର ସଂଶୟାତ୍ମକ । ସେଥିପାଇଁ ସେ 'ଯଦ୍ୟପି' ଶବ୍ଦ ବ୍ୟବହାର କରିଛନ୍ତି । ଅଥଚ ସମଧର୍ମୀ ଅନ୍ୟ ଏକ କବିତା "କବିର ସାନ୍ତ୍ୱନା"ରେ ସେ କିଛିଟା ଆଶାବାଦୀ । ସେଥିପାଇଁ ସେ ଲେଖିଛନ୍ତି — "ନ ଥାଉ ମୋହର କିଛି ପାର୍ଥିବ ସମ୍ପତ୍ତି/ସ୍ୱର୍ଗୀୟ ପଦାର୍ଥ ଦେଇଛନ୍ତି ବିଶ୍ୱପତି ।/କଳ୍ପନା–ରାଜ୍ୟରେ ଯେବେ କରେ ମୁଁ ଭ୍ରମଣ/ଅତୁଳନ ଜଗତର ସର୍ବ ତୁଚ୍ଛ ଧନ ।/ × × × ସେବା କରୁଅଛି ବସି ମୁଁ ମାତୃଭାଷା/ସାନ୍ତ୍ୱନା ଲଭଇ ମନେ ବହି ଏହି ଆଶା/ନହେବି ହୁଏତ ମୁହିଁ ଆହେ ବିଶ୍ୱପତି/ଦେଇଛ ତ ଯାଚି ମୋତେ ଅତୁଳ ସମ୍ପତ୍ତି ।/ଜନ୍ମି କେବା ଛନ୍ତି କୋଟି ଭୁବା ମଧ୍ୟ ଜଣେ;/କେବେହେଲେ କେହି ମୋତେ ପକାଇବେ ମନେ ।/ରହିବେ କବିତା ଗୁଡ଼ି କନ୍ୟା ସ୍ୱରୂପିଣୀ/ଅନୁସରି ଥାଇ ପଣ୍ଡୁ ଚିତ୍ତବିନୋଦିନୀ !/ଉତ୍କଳ–ଜଗତେ ମୁହିଁ ଚେଳିବି ଜୀବନ/କରିବେ ଏ କନ୍ୟାଗୁଡ଼ି ପିତୃ–ତର୍ପଣ ।" ଅଧୁନା ଫକୀର ମୋହନଙ୍କ ଶ୍ରାଦ୍ଧ ତିଥିରେ ତାଙ୍କ ବଂଶର ଉତ୍ତର ଦାୟାଦମାନେ କେହି 'ପିତୃ–ତର୍ପଣ' କରୁଛନ୍ତି କି ନାହିଁ ଜଣାନାହିଁ । କିନ୍ତୁ ତାଙ୍କ "କନ୍ୟା–ସ୍ୱରୂପିଣୀ" କବିତାଗୁଡ଼ିକ ନିଶ୍ଚୟ 'ପିତୃ–ତର୍ପଣ' କରୁଛନ୍ତି । ସେମାନେ ଭୁଲୁନାହାନ୍ତି ନୁହଁନ୍ତି । ଅତ୍ୟନ୍ତ ବିଶ୍ୱସ୍ତ ଓ ନିଷ୍କାପଟ ଭାବରେ ଆଜି ବି ରସଜ୍ଞ ଓ ମୁଗ୍ଧ ପାଠକର ଚିତ୍ତହାରିଣୀ ହୋଇ ଜନ୍ମଦାତା କବି ଫକୀର ମୋହନଙ୍କ ସ୍ମୃତିତର୍ପଣ ଯେ କରୁଛନ୍ତି ଏହା ଅବିସମ୍ବାଦୀ ସତ୍ୟ ।

ପ୍ରଭାରୀ
ଫକୀର ମୋହନ ଗବେଷଣା ପରିଷଦ
ପୁରୁଣାହାଟ, ବାଲେଶ୍ୱର ।



ସୂଚନା ଭବନଠାରେ ଆୟୋଜିତ 'ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ' ଶୀର୍ଷକ ଏକ ପ୍ରଦର୍ଶନୀକୁ ସୂଚନା ଓ ଲୋକ ସମ୍ପର୍କ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର, ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ ଓ ବିଭାଗୀୟ ପଦସ୍ଥ କର୍ମକର୍ତ୍ତାମାନେ ବୁଲି ଦେଖୁଛନ୍ତି (୯/୮) ।

# ଚରିତ୍ର ଚିତ୍ରଣରେ ସେକ୍ସପିୟର୍ ଓ ଫକୀର ମୋହନ

● ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି

ଇଂରାଜୀ ସାହିତ୍ୟରେ ଅଦ୍ୱିତୀୟ ନାଟ୍ୟକାର ହିସାବରେ ସେକ୍ସପିୟର ଯେଉଁ ଖ୍ୟାତି ଅର୍ଜନ କରିଛନ୍ତି, ତା ମୂଳରେ ରହିଛି କଥାବସ୍ତୁର ଚମତ୍କାର ବିନ୍ୟାସ ଓ ଚରିତ୍ର ଚିତ୍ରଣର ଅପୂର୍ବ କୌଶଳ । ଜଣେ ଶ୍ରେଷ୍ଠ ଚରିତ୍ର–ଶିଳ୍ପୀ ଭାବେ ବିଶ୍ୱ ସାହିତ୍ୟରେ ଅସପତ୍ନ ପ୍ରତିଷ୍ଠା ଲାଭ କରି ସେ ନାଟ୍ୟକାର, ଗାଳ୍ପିକ ଓ ଔପନ୍ୟାସିକମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିଛନ୍ତି । ଆଧୁନିକ ଓଡ଼ିଆଭାଷାର ଜନକ ତଥା ଓଡ଼ିଆ କଥା ସମ୍ରାଟ ଫକୀରମୋହନ ସେନାପତି, ବିଶ୍ୱର ଉଚ୍ଚାଙ୍ଗ ସାହିତ୍ୟ ଅଧ୍ୟୟନ କରିବା ନିମନ୍ତେ ସାମର୍ଥ୍ୟ ଓ ସୁଯୋଗ ପାଇଁ ନଥିଲେ ମଧ୍ୟ ବିଶ୍ୱର ପ୍ରସିଦ୍ଧ ଚରିତ୍ର-ଶିଳ୍ପୀଙ୍କ ରଚନାବଳୀର କଥା–ଶିଳ୍ପ, ଶିଳ୍ପଚାତୁରୀ ଓ ଅନ୍ତର୍ଦୃଷ୍ଟି ସହିତ ଫକୀର ମୋହନଙ୍କର ଅପୂର୍ବ ସାମଞ୍ଜସ୍ୟ ଲକ୍ଷ୍ୟ କଲେ ବିସ୍ମିତ ହେବାକୁ ପଡ଼େ । ଇଂରାଜୀ ସାହିତ୍ୟର ସର୍ବବ୍ୟାପକତା ଯୋଗୁଁ ଇଂରେଜ ଲେଖକମାନେ ଯେଉଁ ସ୍ୱୀକୃତି ଲାଭ କରିଛନ୍ତି ଅନ୍ୟ ଭାଷାଭାଷୀ କୃତୀ ଲେଖକମାନେ ସେହି ଗୌରବ ଅର୍ଜନ କରି ପାରି ନାହାନ୍ତି । ଏହାର କାରଣ ଏହି ଭାଷାଭାଷୀ ଲେଖକଙ୍କ ନ୍ୟୂନ ପ୍ରତିଭା ନୁହେଁ ବରଂ ତୁଳନାତ୍ମକ ଅଧ୍ୟୟନ ନିମନ୍ତେ ଆନ୍ତରିକତା, ତତ୍ପରତା ଓ ସୁଯୋଗର ଅଭାବ ହିଁ ସେଥି ପାଇଁ ଦାୟୀ ।

ଜଣେ ଶ୍ରେଷ୍ଠ ଚରିତ୍ର–ଶିଳ୍ପୀ ରୂପେ ସେକସ୍‌ପିୟର୍ ବିଶ୍ୱର ସାହିତ୍ୟ-ସମୀକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରନ୍ତି । ସେକସ୍‌ପିୟର୍ ରଚିତ ନାଟକ ସମୂହରେ ଚରିତ୍ରଗୁଡ଼ିକର ଯେଉଁ ବିପୁଳ ସମାବେଶ ଘଟିଛନ୍ତି ଓ ଚରିତ୍ରଗୁଡ଼ିକ ମଧ୍ୟରେ ମାନବ ଚରିତ୍ରର ସୂକ୍ଷ୍ମାତିସୂକ୍ଷ୍ମ ବିଭାବଗୁଡ଼ିକୁ ଯେପରି ଉନ୍ମୋଚନ କରିଛନ୍ତି ତାହା ଚିନ୍ତାଶୀଳ ପାଠକମାନଙ୍କୁ ସ୍ୱୀକୃତ କରିଥାଏ । ସେକସ୍‌ପିୟର୍‌ଙ୍କ ଚରିତ୍ର ଚିତ୍ରଣ ସହିତ ଓଡ଼ିଆ ସାହିତ୍ୟର କଥା ସମ୍ରାଟ ଫକୀର ମୋହନଙ୍କ ଚରିତ୍ର ଚିତ୍ରଣର ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ମାନବ ଚରିତ୍ରକୁ ଅନୁଧ୍ୟାନ, ଅନୁଶୀଳନ ଓ ବିଶ୍ଳେଷଣ କରିବାରେ ଉଭୟଙ୍କର ଅସାଧାରଣ ପାରଦର୍ଶିତା ଥିଲା । ମାନବର ବାହ୍ୟ ଓ ଅନ୍ତଃପ୍ରକୃତିକୁ ଅନୁଧ୍ୟାନ କରି ପରୀକ୍ଷା କରି ରୂପ ଦେବାର ଦକ୍ଷତାକୁ ଯଦି ସାରସ୍ୱତ ପ୍ରତିଭାର କଷଟୀ ପଥର ବୋଲି ଗ୍ରହଣ କରାଯାଏ ତେବେ ସେକସ୍‌ପିୟର୍ ଓ ଫକୀର ମୋହନ ହେବେ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଚରିତ୍ରାୟନରେ ପ୍ରୟୋଗ ହେଉଥିବା ଉଭୟଙ୍କ ଶିଳ୍ପ–ରୀତିର ତୁଳନାତ୍ମକ ଅଧ୍ୟୟନ ସୂଚାଇ ଦିଏ ଯେ ଉଭୟଙ୍କ ଅନୁଧ୍ୟାନ, ଆଭିମୁଖ୍ୟ ଓ ଆଦର୍ଶ ମଧ୍ୟରେ ବହୁ ସାମଞ୍ଜସ୍ୟ ରହିଛି ।

ଆଧୁନିକ ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ଫକୀରମୋହନ ସେନାପତି ଜଣେ ଯୁଗାନ୍ତକାରୀ ସ୍ରଷ୍ଟାଭାବେ ସମ୍ମାନିତ । ଭାରତୀୟ ସାହିତ୍ୟର ତୁଳନାତ୍ମକ ସମୀକ୍ଷକ ରୂପେ ଖ୍ୟାତି ଅର୍ଜନ କରିଥିବା କା ନା ସୁବ୍ରମଣ୍ୟମ୍ ଫକୀର ମୋହନଙ୍କ କଥାସାହିତ୍ୟ ସମ୍ପର୍କରେ ମନ୍ତବ୍ୟ ଦେଇ କହିଛନ୍ତି "This is surely a test of all great fiction that it is modern for all time. His work should go into the lives of the people of the other regions of India to give them an idea of the heights, Oriya in its first stage has achieved and to supply the elements that might be wanting in other regions. ସମସାମୟିକ ଭାରତୀୟ କଥା–ସାହିତ୍ୟରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଶିଳ୍ପୀ ରୂପେ ଫକୀର ମୋହନ ଆଜି ଯେଉଁ ସମ୍ମାନ ଲାଭ କରିଛନ୍ତି ତାହା ତାଙ୍କ ଶାଶ୍ୱତ ପ୍ରତିଭା ଓ ଚିରନ୍ତନ ସୃଷ୍ଟି–ମାନସର ପରିଚୟ ପ୍ରଦାନ କରେ ।

ଗଳ୍ପ, ଉପନ୍ୟାସ, ନାଟକ, ଗାଥା କବିତା ଇତ୍ୟାଦି ପ୍ରତ୍ୟେକ ବିଭାଗର କଥାବସ୍ତୁ, ମୌଳିକ ଉପାଦାନ ବା କଥାବୀଜ (ମୋଟିଫ୍) ଉପରେ ନିର୍ଭରଶୀଳ । ଏହି କଥାବୀଜ ହିଁ ସାରସ୍ୱତ ସ୍ରଷ୍ଟାର ସୃଷ୍ଟିପ୍ରକ୍ରିୟାକୁ ନିୟନ୍ତ୍ରଣ କରିଥାଏ । ସ୍ରଷ୍ଟାମାନେ ଯଶସ୍ୱୀ ହୁଅନ୍ତି ଏହି ଉପାଦାନର ଯଥାର୍ଥ ପ୍ରୟୋଗ ଦ୍ୱାରା । ସେକସ୍‌ପିୟର୍ ଓ ଫକୀର ମୋହନ ସାର୍ଥକ ଭାବରେ ଏହି ଉପାଦାନକୁ ଉପଯୋଗ କରି ତାଙ୍କ ସାରସ୍ୱତ ପ୍ରତିଭାର ପରାକାଷ୍ଠା ପ୍ରଦର୍ଶନ କରିପାରିଛନ୍ତି । କଥା ବସ୍ତୁକୁ ସମ୍ପ୍ରସାରଣ କରିବା ନିମନ୍ତେ ଏମାନେ ଯେଉଁ କେତେଗୁଡ଼ିଏ ମୌଳିକ ଉପାଦାନର ସାହାଯ୍ୟ ନେଇଛନ୍ତି ସେଗୁଡ଼ିକ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ହେଲା, ପ୍ରେମ, ପ୍ରଣୟ, ସନ୍ଦେହ, ଅବିଶ୍ୱାସ, ଉଚ୍ଚାଭିଳାଷ, ଶୋଷଣ, ପ୍ରତାରଣା, ବିଶ୍ୱାସ ଘାତକତା, ପ୍ରତିଶୋଧ, ହତ୍ୟା, ଅନୁତାପ ଇତ୍ୟାଦି । ସେକସ୍‌ପିୟର୍ ଓ ଫକୀର ମୋହନ ନିଜନିଜ ସୃଷ୍ଟି–ସମ୍ପଦରେ ଏହି ଉପାଦାନଗୁଡ଼ିକର ସାର୍ଥକ ପ୍ରୟୋଗ କରି ତାଙ୍କ ରଚନାବଳୀକୁ ଯେପରି କାଳୋତୀର୍ଣ୍ଣ କରିପାରିଛନ୍ତି ତାହାର ତୁଳନାତ୍ମକ ଅଧ୍ୟୟନ ନିମନ୍ତେ ଉପରୋକ୍ତ ଉପାଦାନ ମଧ୍ୟରୁ ତୁଇ ତିନୋଟି ଉପାଦାନର ପ୍ରୟୋଗାତ୍ମକ ଦିଗକୁ ଉଦାହରଣ ରୂପେ ନେଲେ ଯଥେଷ୍ଟ ହେବ ।

ଦୁଷ୍କର୍ମ ଜନିତ ଅନୁତାପ ନାୟକ ବା ନାୟିକାର ମାନସତନ୍ତ୍ରୀକୁ କିପରି ଆନ୍ଦୋଳିତ କରେ ଓ ଅନୁତାପ ଦଗ୍ଧ ଚିତ୍ତବୃତ୍ତି କିପରି ଅଭିବ୍ୟକ୍ତ ଲାଭ କରେ, ସେ ପ୍ରସଙ୍ଗରେ ସେକସ୍‌ପିୟର୍ ଓ ଫକୀରମୋହନଙ୍କ ବର୍ଣ୍ଣନାତ୍ମକ ସାମ୍ୟ ଦର୍ଶନ କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସେକସ୍‌ପିୟରଙ୍କ ପ୍ରସିଦ୍ଧ ନାଟକ – 'ମେକ୍‌ବେଥ୍'ର ଗୋଟିଏ ଦୃଶ୍ୟ ଏ ପରିପ୍ରେକ୍ଷୀରେ ଉଲ୍ଲେଖ ଯୋଗ୍ୟ । ସୈନ୍ୟାଧକ୍ଷ ମେକ୍‌ବେଥ୍ ଯୁଦ୍ଧ କ୍ଷେତ୍ରରୁ ବିଜୟ ଉଲ୍ଲାସରେ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ତିନୋଟି ଡାହାଣୀ ତାଙ୍କୁ କହିଛନ୍ତି "ତୁମେ ଭବିଷ୍ୟତରେ ଏ ଦେଶରେ ରାଜା ହେବ । ତୁମେ ହିଁ ବର୍ତ୍ତମାନର ରାଜା ଡନ୍‌କାନ୍‌ଙ୍କୁ ହତ୍ୟା କରିବ ।" ସ୍ୱାମୀଙ୍କ ନିକଟରୁ ଏ କଥା ଶୁଣି ଲେଡି ମେକ୍‌ବେଥ୍ ସ୍ୱାମୀଙ୍କୁ ପ୍ରବର୍ତ୍ତାଇଛନ୍ତି ରାଜା ଡନ୍‌କାନ୍‌ଙ୍କୁ ହତ୍ୟା କରିବା ପାଇଁ । ଡନ୍‌କାନ୍ ମେକ୍‌ବେଥ୍‌ଙ୍କ ଘରେ ଅତିଥି ହୋଇ ଶୋଇଥିବା ଅବସ୍ଥାରେ, ନିଜ ଅନିଚ୍ଛା ସତ୍ତ୍ୱେ, ଲେଡ଼ି ମେକ୍‌ବେଥ୍‌ଙ୍କ ପ୍ରରୋଚନାରେ, ମେକ୍‌ବେଥ୍ ଛୁରୀକା ସାହାଯ୍ୟରେ ଡନ୍‌କାନ୍‌ଙ୍କୁ ହତ୍ୟା କରିଛନ୍ତି । ଘଟଣା ପ୍ରବାହର ଏହି ଭିତ୍ତିଭୂମିକୁ ଅବଲମ୍ବନ କରି ସେକସ୍‌ପିୟର୍ ମେକ୍‌ବେଥ୍‌ଙ୍କ ମାନସିକ ପ୍ରତିକ୍ରିୟା ଚିତ୍ରଣ କରିଛନ୍ତି । ନିଜ ଦୁଷ୍କର୍ମରେ ମ୍ରିୟମାଣ ହୋଇ ବିକ୍ଷୁବ୍ଧ ଚିତ୍ତରେ ମେକ୍‌ବେଥ୍ ଯେଉଁ ଅନୁଶୋଚନା–ବାଣୀ ପ୍ରକାଶ କରି କହିଛନ୍ତି ସରଳ ଇଂରେଜୀରେ ତାହାର ରୂପାନ୍ତର ହେଲା–"I fancied I heard a voice cry, "Sleep no more! Macbeth is murdering sleep itself." I suppose I have out raged and killed innocent sleep, sleep that compeses and soothes all the cares of the mind, which puts an end to the activities of the day, and brings relief to all fatigue, –sleep that is the soothing balm to the aching hearts and restorative provided by nature, and chief sustainer of life." ମେକ୍‌ବେଥ୍‌ଙ୍କ ପରି ନାଟ୍ୟ–ନାୟକର ଅନୁତପ୍ତ ମନକୁ ସେକସ୍‌ପିୟର୍ ଅତି ଚମତ୍କାର ଭାବେ ରୂପ ଦେଇ ପୁନର୍ବାର ମେକ୍‌ବେଥ୍ ମୁଖରେ କହିଛନ୍ତି– "Will all the oceans of the world wash away this stain of blood from my hand ! I rather think this hand of mine will turn the waters of the sea into crimson, so that the dark green water will become red."

ସେକସ୍‌ପିୟରଙ୍କ ଅନ୍ୟ ଏକ ପ୍ରସିଦ୍ଧ ନାଟକ, 'ଅଥେଲୋ'ର ଗୋଟିଏ ଦୃଶ୍ୟରେ ବର୍ଣ୍ଣିତ ହୋଇଥିବା ପାପକାର୍ଯ୍ୟ ଜନିତ ଅନୁତାପ ଦଗ୍ଧ ଚିତ୍ତବୃତ୍ତିକୁ ଆଉ ଏକ ଦୃଷ୍ଟାନ୍ତ ରୂପେ ନିଆଯାଇପାରେ । ଆୟାଗୋର କୁମନ୍ତ୍ରଣାରେ ବଶବର୍ତ୍ତୀ ହୋଇ ଅଥେଲୋ ନିଜର ଅପୂର୍ବ ଲାବଣ୍ୟମୟୀ ସର୍ବଗୁଣ ସମ୍ପନ୍ନା ପତିବ୍ରତା ସ୍ତ୍ରୀ ଡେସ୍‌ଡ଼ିମୋନାଙ୍କୁ ସନ୍ଦେହ କରି ଯେପରି ନିର୍ମମ ଭାବେ ହତ୍ୟା କରିଛି ତାହା ସରଳ ନିଷ୍କପଟ ଅଥେଲୋ ପକ୍ଷରେ ଏକାନ୍ତ ସ୍ୱାଭାବିକ । ମାତ୍ର ଷଡ଼ଯନ୍ତ୍ରର ରହସ୍ୟ ଉଦ୍‌ଘାଟିତ ହେବା ପରେ ଅଥେଲୋ ନିଜ କୁକର୍ମ ପାଇଁ ଯେଉଁ ଅନୁଶୋଚନା ପ୍ରକାଶ କରିଛି ତାହା ଅତୀବ ମର୍ମସ୍ପର୍ଶୀ ହୋଇଛି । ଏଠାରେ ଅଥେଲୋ ନିଜର ପାପକର୍ମ ଜନିତ ଅନୁତାପରେ ଜର୍ଜରିତ ହୋଇ ଖୋଦୋକ୍ତି ପ୍ରକାଶ କରିଛି ଓ ପ୍ରାୟଶ୍ଚିତ ସ୍ୱରୂପ ଆତ୍ମହତ୍ୟା କରିଛି । ଅନୁତପ୍ତ ଅଥେଲୋର ହୃଦୟୋଚ୍ଛ୍ୱାସକୁ ଶ୍ରୀ ମାୟାଧର ମାନସିଂହ ଓଡ଼ିଆରେ ଅନୁବାଦ କରି ଅନୁଦିତ 'ଅଥେଲୋ' ନାଟକରେ ଲେଖିଛନ୍ତି–"ହାୟରେ ଅଭିଶପ୍ତ ଜୀବନ ମୋର ! ଛାଟ ମାରି ମାରି ଘଉଡ଼ାଇ ନିଅ ମତେ ସଇତାନଗଣ, ଏହି ସ୍ୱର୍ଗୀୟ ସୁଷମା ନିକଟରୁ । ଅନ୍ତହୀନ ବାୟୁମଣ୍ଡଳରେ ଉଡ଼ାଅ ମୋର ଆତ୍ମାକୁ ଶୂନ୍ୟେ, ଦଗ୍ଧ କର ତାକୁ ଗନ୍ଧକାଗ୍ନିରେ । ତରଳାଗ୍ନିରେ ଚିରକାଳ ରନ୍ଧନ କର ମତେ । ଓଃ ଡେସ୍‌ଡ଼ିମୋନା ! ନାହିଁ ଆଉ ତମେ । ଡେସ୍‌ଡ଼ିମୋନା ମୃତ ! ଓଃ ଓଃ ଓଃ" ସେକସ୍‌ପିୟର୍ ଏହାକୁ ନିଜ ଭାଷାରେ ବର୍ଣ୍ଣନା କରି ଲେଖିଛନ୍ତି–"O cursed, cursed slave !–Whip me, Ye devils / From the possession of this heavenly sight /Blow me about in winds ! roast me in sulphur !/ Wash me in steep–down gulfs of liquid fire !/ O desdemona ! desdemona ! dead ? Dead ? O! O! O!" ଅଥେଲୋ ଆତ୍ମହତ୍ୟା ଜନିତ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମୃତ ଡେସଡ଼ିମୋନାକୁ କହିଛି "ତତେ ମାରିବା ପୂର୍ବରୁ ମୁଁ ଚୁମ୍ବନ ଦେଇଥିଲି ତତେ । ମୋର ଆଉ ଅନ୍ୟ ଗତି ନାହିଁ । (ଡେସଡ଼ିମୋନା ଉପରେ ପତିତ ହେବା) ନିଜକୁ ହତ୍ୟା କରି ମୁଁ ବର୍ତ୍ତମାନ ତୋଷି ଚୁମ୍ବନ ଉପରେ ପ୍ରାଣ ତ୍ୟାଗ କରିବାକୁ ଯାଉଛି ।

ଫକୀର ମୋହନ ତାଙ୍କ ପ୍ରସିଦ୍ଧ ଉପନ୍ୟାସ "ଛମାଣ ଆଠଗୁଣ୍ଠ"ର ନାୟକ ରାମଚନ୍ଦ୍ର ମଙ୍ଗରାଜ ଚରିତ୍ରରେ ଅବିକଳ ଏହିପରି ଏକ ଅବସ୍ଥା ସୃଷ୍ଟି କରି ଅନୁତପ୍ତ ମନର ଜ୍ୱାଳାକୁ ସୁନ୍ଦର ଭାବେ ଉନ୍ମୋଚନ କରିଛନ୍ତି । ନିଜ ଅପକର୍ମର ଭୟାବହତା ଉପଲବ୍ଧି କରି ମଙ୍ଗରାଜ ଅନୁଶୋଚନା ପ୍ରକାଶ କରିଛନ୍ତି । ପାପଦଗ୍ଧ ହୃଦୟରେ ଓ ବିକ୍ଷୁବ୍ଧ ଚିତ୍ତରେ ମଙ୍ଗରାଜ ଯେଉଁ ବାଣୀ ଉଚ୍ଚାରଣ କରିଛନ୍ତି ତାହା ମଣିଷର ଅବଚେତନ ମନକୁ ଅନୁଧ୍ୟାନ କରିବା ପାଇଁ ଯଥେଷ୍ଟ ଉପାଦାନ ଯୋଗାଇଥାଏ । ଫକୀର ମୋହନଙ୍କ ବର୍ଣ୍ଣନାରେ ଏହି ଅନୁଶୋଚନାର ଉତ୍କର୍ଷ ଲକ୍ଷ୍ୟ କରିବା କଥା । ସେ ବର୍ଣ୍ଣନା କରି କହିଛନ୍ତି, "ମଙ୍ଗରାଜେ ଚାରିଦିନ ହେଲା ପଡ଼ିଛନ୍ତି । ଏକ ଧ୍ୟାନରେ ଆକାଶକୁ ଚାହିଁ ପଡ଼ିଛନ୍ତି । କେତେବେଳେ ଟିକିଏ ଆଖି ଲାଗିଗଲେ ହାଉଳି ଖାଇଲା ପରି ଚମକି ପଡ଼ି କହନ୍ତି" ଅ–ମା–ଅ–ମୁଁ xxxx ତାଙ୍କୁ ଟିକିଏ ଛାଇ ନିଦ ଲାଗିଲେ ଦେଖନ୍ତି ଆକାଶରେ ଏକ ଭୟଙ୍କରୀ ମୂର୍ତ୍ତୀ । ବିଶାଳ ମୁଣ୍ଡର ବାଳ ଫୁରୁଜା, ମୂଳା ପରି ବଡ଼ ଧଳା ଧଳା ଦାନ୍ତ, ଦୁଇତିନି ହାତ ଲମ୍ବ ଜିଭ ଲହ ଲହ କରି ତାଙ୍କୁ ଖାଇବାକୁ ଧାଇଁଛି । xxxx ଆଉ ଦେଖିଲେ, ଭଇଁଆ ପରି ଘଟନ୍ତି ସହସ୍ର ବାଘା ଆକାଶ ମାର୍ଗସ୍ଥ ଘୋର କଳାମେଘ ମଧ୍ୟରୁ ବାହାରି ଆସୁଛନ୍ତି, ସମସ୍ତଙ୍କ ହସ୍ତରେ ଖଡ୍‌ଗ ଏବଂ ଲୁହାର ମୁଦ୍‌ଗର । ଏହି ବେଳେକେ ସମସ୍ତ ମୁଦ୍‌ଗର ତାଙ୍କ ମୁଣ୍ଡରେ ପଡ଼ିଲା ପରି ଜଣାଗଲା ।" ସାଆନ୍ତାଣୀଙ୍କ ମୃତ୍ୟୁ ସମୟରେ ମଙ୍ଗରାଜଙ୍କ ଅନୁଶୋଚନା ସମ୍ପର୍କରେ ସେ ଏକ ମର୍ମସ୍ପର୍ଶୀ ବର୍ଣ୍ଣନା ପ୍ରଦାନ କରି ଲେଖିଛନ୍ତି । "ମଙ୍ଗରାଜଙ୍କ ଅବସ୍ଥା ଦେଖି ଆମ୍ଭେମାନେ ଅନୁମାନ କରୁଅଛୁ, ତାଙ୍କ ମନରେ ଦୁଃଖ ଓ ଅନୁତାପ ଉଭୟ ଉପସ୍ଥିତ ହୋଇଅଛି । ଦୁଃଖରେ ମନୁଷ୍ୟ କାନ୍ଦେ, ଅନୁତାପରେ କାନ୍ଦେ ନାହିଁ, ଦୁଃଖୀ ହୃଦୟର ଜ୍ୱଳନ୍ତ ଅଙ୍ଗାର, ଅନୁତାପ ତୁଷାନଳ ।" ଫକୀର ମୋହନ କଥାବସ୍ତୁରେ ଏହି 'ଅନୁତାପ' ଉପାଦାନଟିକୁ ଅଧିକ ବଳିଷ୍ଠ, ମାର୍ମିକ କରିବା ନିମନ୍ତେ ମଙ୍ଗରାଜଙ୍କ ସମ୍ପର୍କରେ ପରୋକ୍ଷ ଦେଇ କହିଛନ୍ତି– "ଯେଉଁ ବୃତ୍ତିର ବଶମ୍ବଦ ହୋଇ ମନୁଷ୍ୟ ଅନ୍ୟାୟ କରେ, ମଙ୍ଗରାଜଙ୍କର ସେହି ବୃତ୍ତି ଆଜି ଉତ୍ତେଜିତ ହୋଇ ଉଠିଛି, ଏ କଥା କିଏ କହିପାରେ ?"

ଧାବସ୍ତୁର ମୌଳିକତା ପ୍ରତିପାଦନ ପାଇଁ ଚରିତ୍ର- ଚିତ୍ରଣ ମାଧ୍ୟମରେ 'ଅନୁତାପ' 'ଅନୁଶୋଚନା' ଇତ୍ୟାଦି କଥାବୀଜ ପ୍ରୟୋଗ କରିବାରେ ସେକସ୍‌ପିୟର୍ ଓ ଫକୀରମୋହନ କେତେଦୂର ସାଫଲ୍ୟ ଅର୍ଜନ କରିଛନ୍ତି ଏବଂ ଚରିତ୍ରର ଅପୂର୍ବ ବିଜ୍ଞାନୀ ହିସାବରେ ସେମାନେ ପରସ୍ପରର କେତେ ନିକଟବର୍ତ୍ତୀ ହୋଇ ପାରିଛନ୍ତି, ତାହା ଉପରୋକ୍ତ ଆଲୋଚନାରୁ ବେଶ୍ ଲକ୍ଷ୍ୟ କରିହେବ । ଉଭୟଙ୍କର ତୁଳନାତ୍ମକ ମୂଲ୍ୟାୟନ ଆଲୋଚନା କଲାବେଳେ ଆଉ ଗୋଟିଏ ବିଷୟ ବିଶ୍ୱର ପରିସରକୁ ଆସୁଛି । ଘଟଣା ବସ୍ତୁର ବର୍ଣ୍ଣନା ଓ ଚରିତ୍ର ଚିତ୍ରଣ ମାଧ୍ୟମରେ ପାଠକରେ ସଂସ୍କାର ଆଣିବା ଯଦି ସାହିତ୍ୟର ଆଭିମୁଖ୍ୟ ବୋଲି ଗ୍ରହଣ କରାଯାଏ, ତେବେ କଥାବସ୍ତୁର ନିଛକ ବର୍ଣ୍ଣନା ବା ଚରିତ୍ରର ଉପସ୍ଥାପନା, ଲେଖକଙ୍କ ପକ୍ଷରେ ଏକମାତ୍ର ଶ୍ରେୟ ନା ସାହିତ୍ୟର ମହତ୍ ଉଦ୍ଦେଶ୍ୟ ସାଧନ ପାଇଁ ତାହାର ଆଉ କିଛି କର୍ତ୍ତବ୍ୟ ଅଛି ବୋଲି ବୁଝିବାକୁ ହେବ ? ଫକୀର ମୋହନ ସାହିତ୍ୟର ସାର୍ବଜନୀନ ଆବେଦନକୁ ଆଦର୍ଶ ରୂପେ ଗ୍ରହଣ କରି କଥା-ଶୈଳୀର ପାରମ୍ପରିକ ଗତାନୁଗତିକ ମାର୍ଗ ବ୍ୟତୀତ ବ୍ୟକ୍ତିନିଷ୍ଠ ମାର୍ଗ ଅନୁସରଣ ପୂର୍ବକ ସନାତନ ଧର୍ମର ଉପଦେଶକୁ ଉଦ୍ଧାର କରି କହିଛନ୍ତି-"ତୁମ୍ଭେ ପାପକୁ ଘୃଣା କର, ପାପୀକୁ ଘୃଣା କରନାହିଁ ।"

ଅନୁତାପ ବା ପ୍ରାୟଶ୍ଚିତ ରୂପକ ମୌଳିକ ଉପାଦାନକୁ ରୂପ ଦେବାରେ ଲେଖକ କି ଆଦର୍ଶ, ନୈତିକ ମୂଲ୍ୟବୋଧ ଓ ସାର୍ବଜନୀନ ଶ୍ରେୟମାର୍ଗ ଅବଲମ୍ବନ କରିବା ଉଚିତ ତାହା ଫକୀରମୋହନ ତାଙ୍କ ବିଭିନ୍ନ ଉପନ୍ୟାସ ଓ ଗଳ୍ପରେ ଦର୍ଶାଇ ଦେଇ ଯାଇଛନ୍ତି । 'ମାମୁଁ' ଉପନ୍ୟାସର ମୁଖ୍ୟ ନାୟକ, ନାଜର ନଟବର ଦାସ ଚରିତ୍ରରେ ଲେଖକର ଏହି ମହାନ୍ ଆଦର୍ଶ ଓ ସମାଜ-ସଂସ୍କୃତି ପ୍ରତି ତା'ର ଦାୟିତ୍ୱ ବୋଧକୁ ଫକୀରମୋହନ ଅଧିକ ସ୍ପଷ୍ଟ କରିଦେଇ ଯାଇଛନ୍ତି । ଅନୁତପ୍ତ ନଟବର ସପକ୍ଷରେ ପାଠକ ମନରେ ମନସ୍ତାତ୍ତ୍ୱିକ ପରିବେଶ ସୃଷ୍ଟି କରିବା ପାଇଁ ଫକୀରମୋହନ କହିଛନ୍ତି "ଆମ୍ଭେମାନେ ଜ୍ଞାନ-ନେତ୍ର ଉନ୍ମୀଳନ କରି ଦେଖିଲେ ସ୍ପଷ୍ଟ କରି ଦେଖୁ, ବିପଥଗାମୀ ମାନବମାନଙ୍କୁ ସୁମାର୍ଗକୁ ଫେରାଇ ଆଣିବା ନିମନ୍ତେ ଭଗବାନ ଯେମନ୍ତି ବିପଦରୂପ ପ୍ରବଳ ପଥପ୍ରଦର୍ଶକ ପ୍ରେରଣ କରିଥାନ୍ତି ।" ସେ ପୁଣି ନଟବର ମୁଖରେ ଅନୁତାପର ଭାଷା ଭରି ଦେଇ ଲେଖିଛନ୍ତି, "ହେ ପତିତପାବନ ! ଅଗତିର ରକ୍ଷକ ! ହେ ଦୀନ ଦୟାମୟ ! ରକ୍ଷା କର, ଜଗତର ପ୍ରଭୁ ! ମୁଁ ପାପୀ- ମୋଠୁଁ ବଳି ଜଗତରେ ପାପୀ ନାହିଁ । xxxx ମୋ ପାପର ସୀମା ଅଛି, ତୁମ୍ଭ କରୁଣା ଅନନ୍ତ, ଅବଶ୍ୟ ରକ୍ଷା ପାଇବି । ଯେଉଁ ଦଣ୍ଡ ଇଚ୍ଛା ଦିଅ- ତୁମ୍ଭକୁ ନମସ୍କାର, ନମସ୍କାର ।

"ବିପଥଗାମୀ ମାନବମାନଙ୍କୁ ସୁମାର୍ଗକୁ ଫେରାଇ ଆଣିବା" ଯଦି ସାରସ୍ୱତ ସାଧକ-ଓ-ସାହିତ୍ୟର ଏକ ଅଲିଖିତ ସାମ୍ବିଧାନିକ କର୍ତ୍ତବ୍ୟ ବୋଲି ଗ୍ରହଣ କରାଯାଏ ତେବେ ତାହାର ଉପାଦେୟ ଓ ଉପେକ୍ଷା ସମ୍ପର୍କରେ ସ୍ରଷ୍ଟା ସଚେତନ୍ ହେବା ଉଚିତ । ତୁଳନାତ୍ମକ ବିଶ୍ଳେଷଣ ଦୃଷ୍ଟିରୁ ଚରିତ୍ର ଚିତ୍ରଣରେ ସେକସ୍‌ପିୟର୍ ଓ ଫକୀରମୋହନ ଉଭୟେ ଅସମ୍ଭବ ପ୍ରତିଭାର ଅଧିକାରୀ । ମୁଖ୍ୟ ଚରିତ୍ରଗୁଡ଼ିକ ସେମାନଙ୍କ ଅଭ୍ରାନ୍ତ ଲେଖନୀରେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ସୁନ୍ଦରଭାବେ ଉନ୍ମୋଚିତ ହୋଇ କଥାବସ୍ତୁର ଗାମ୍ଭୀର୍ଯ୍ୟ ବୃଦ୍ଧି କରିଛନ୍ତି । ମାନବ ଚରିତ୍ର ଅନୁଧ୍ୟାନ କରିବାରେ ଉଭୟେ ଯେଉଁ ସୂକ୍ଷ୍ମଦୃଷ୍ଟି ଓ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ତାହା ବିଶ୍ୱ ସାହିତ୍ୟରେ ବିରଳ । ମାତ୍ର ବହୁ କ୍ଷେତ୍ରରେ ମୁଖ୍ୟ ଖଳ ଚରିତ୍ରକୁ ଓ ଦୁଷ୍କର୍ମର ଚରମ ପରିଣତିକୁ ସାରସ୍ୱତ ନ୍ୟାୟ ଦେବାରେ ଉଭୟଙ୍କ ଆଭିମୁଖ୍ୟରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ସେକସ୍‌ପିୟର୍ 'ଓଥେଲୋ' ପ୍ରଭୃତି କ୍ଷେତ୍ରରେ ହତ୍ୟାଜନିତ ଦୁଷ୍କର୍ମର ପ୍ରାୟଶ୍ଚିତ ନିମନ୍ତେ "ଆତ୍ମହତ୍ୟା" ରୂପକ ପନ୍ଥାର ଆଶ୍ରୟ ନେଇଛନ୍ତି । ହିଂସାର ପରିଶୋଧନ ନିମନ୍ତେ ସେ ହିଂସାକୁ ଅସ୍ତ୍ର ରୂପେ ପ୍ରୟୋଗ କରିଛନ୍ତି । ସେକସ୍‌ପିୟର୍ ଏଠାରେ ପାପର ପ୍ରାୟଶ୍ଚିତ ପାଇଁ ପାପୀକୁ ହତ୍ୟା କରିବା ଶ୍ରେୟ ମଣିଛନ୍ତି । କିନ୍ତୁ ଫକୀରମୋହନ ଭାରତୀୟ ସନାତନ-ମାଧବ-ଧର୍ମ ଓ ସାଂସ୍କୃତିକ ପରମ୍ପରାର ମହାନ୍ ଆଦର୍ଶକୁ ତାଙ୍କ କଥା ସାହିତ୍ୟରେ ରୂପ ପ୍ରଦାନ କରି ଭାରତୀୟ ଜୀବନ-ଦର୍ଶନର ମହତ୍ତ୍ୱ ପ୍ରଖ୍ୟାପନ କରିଛନ୍ତି । ମହାତ୍ମାଗାନ୍ଧୀଙ୍କ ବହୁ ପୂର୍ବରୁ ସାହିତ୍ୟ-ଦରବାରରେ ଅହିଂସାବାଣୀ ପ୍ରଚାର କରିବାରେ ପ୍ରକୃତରେ ଫକୀରମୋହନ ହେଉଛନ୍ତି ଭାରତୀୟ ଲେଖକଙ୍କ ମଧ୍ୟରେ ପ୍ରଥମ ଯଶସ୍ୱୀ ସ୍ରଷ୍ଟା । ରାମଚନ୍ଦ୍ର ମଙ୍ଗରାଜ ଓ ନାଜର ନଟବର ଦାସଙ୍କ ଅକ୍ଷମଣୀୟ ପାପକୁ ମାର୍ଜନା କରିବା ପାଇଁ ପାଠକର ନୈତିକ ମୂଲ୍ୟ ବୋଧକୁ ଯେପରି ଆବେଦନ କରିଛନ୍ତି ତାହା ସେକସ୍‌ପିୟର୍ - ସାହିତ୍ୟରେ ସମ୍ପୂର୍ଣ୍ଣ ଦୁର୍ଲଭ । ମହାନ୍ ଚରିତ୍ରଶିଳ୍ପୀ ଫକୀର ମୋହନଙ୍କ ଅନବଦ୍ୟ କୃତିତ୍ୱ ଦର୍ଶନ କରି କା ନା ସୁବ୍ରମଣ୍ୟମ୍ ଯଥାର୍ଥରେ କହିଛନ୍ତି- "In this task of reevaluation, if it is to be done effectively, the Indian critic will find that Phakir Mohan Senapati occupies a central place. For he had little to unlearn; and future practioner of the novel in India have to learn much from him- things of a purely literary, salutary kind." ପ୍ରାଚୀନ ଭାରତୀୟ ମୂଲ୍ୟବୋଧର ଜଣେ ନିଷ୍ଠାପର ଧାରକ ଓ ଉଦ୍‌ଗାତା ଭାବେ ଫକୀରମୋହନ ନିଜ କଥା-ସାହିତ୍ୟରେ ଯେପରି ପରିଚୟ ଦେଇଛନ୍ତି ତାହା ଭାରତୀୟ କଥା ସାହିତ୍ୟରେ ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଫକୀରମୋହନଙ୍କ ଉପରେ ଗବେଷଣା କରି ପିଏଚ୍.ଡି ଡିଗ୍ରୀ ପାଇଥିବା ତାଙ୍କ ଆତ୍ମଜୀବନୀକୁ ଇଂରାଜୀରେ ଅନୁବାଦ କରିଥିବା, ଲଣ୍ଡନ ବିଶ୍ୱବିଦ୍ୟାଳୟର ପୂର୍ବତନ ଓଡ଼ିଆ ଅଧ୍ୟାପକ Dr. J. V. Boutton ଏ ପ୍ରସଙ୍ଗରେ ଯାହା କହିଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । ସେ କହିଛନ୍ତି "xx essentially Phakirmohana had but one life-long aim : the translation of the value system of ancient India into Orya from Sanskrit, either literally as in his Mahabharata Ramayana and Upanisadas or metaphorically as in his prose-fiction." ଚରିତ୍ର ଚିତ୍ରଣର ସାମଗ୍ରିକ ଓ ବୃହତ୍ତର ଦୃଷ୍ଟି କୋଣରୁ ବିଚାର କଲେ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ପଡ଼େ ଯେ ସେକସ୍‌ପିୟରଙ୍କ ସାହିତ୍ୟ-ରସ କାବ୍ୟାନନ୍ଦରେ ସୀମିତଥିବା ବେଳେ ଫକୀରମୋହନଙ୍କ ଉକ୍ତ ରସ ବ୍ରହ୍ମାନନ୍ଦକୁ ଉତ୍ତୀର୍ଣ୍ଣ ହୋଇଛି ।


**ସହାୟକ ଗ୍ରନ୍ଥସୂଚୀ**

(୧) The complete works of william Shakespeare, 1983.

(୨) ଫକୀରମୋହନ ଗ୍ରନ୍ଥାବଳୀ, ୧ମ ଖଣ୍ଡ, ୧୯୬୭ ।

(୩) Shakespeare's Macbeth, Khandelwal

(୪) ଓଥେଲୋ - ଡଃ ମାୟାଧର ମାନସିଂହ, ୧୯୬୭ ।

(୫) Phakirmohana Senapati and his times-Dr. Dr. J. V. Boutton.



ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ (ଓଡ଼ିଆ ବିଭାଗ),
ଫକୀର ମୋହନ ମହାବିଦ୍ୟାଳୟ, ବାଲେଶ୍ୱର ।

# ଯୋଗଜନ୍ମା ଫକୀର ମୋହନ

● ଶ୍ରୀ ମନୋରଞ୍ଜନ ନନ୍ଦ

ବ୍ୟାସକବି ଫକୀର ମୋହନ ସେନାପତି ଓଡ଼ିଆ ଜୀବନର ବାସ୍ତବ ସମସ୍ୟା ଓ ଯନ୍ତ୍ରଣାକୁ ଅତି ଜୀବନ୍ତ ଭାବେ ବର୍ଣ୍ଣନା କରି ସାମନ୍ତବାଦୀ ସାହିତ୍ୟର ଚିନ୍ତାଧାରାରେ ଏକ ପୂର୍ଣ୍ଣଚ୍ଛେଦ ପକାଇବାକୁ କେବଳ ଉଦ୍ୟମ କରିନାହାନ୍ତି, ନିଜର ଲେଖନୀ ଖୁନ୍ତୁରୀରେ ଏକ ଅଭିନବ କୌଶଳ ଓ ନୂତନ ଦିଗ୍‌ଦର୍ଶନ ଦେଇ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିବାରେ ସମର୍ଥ ହୋଇ ପାରିଛନ୍ତି ।

କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନା କରି ଫକୀର ମୋହନ ଯେଉଁଳି ଚମତ୍କାରିତା ସୃଷ୍ଟି କରିଛନ୍ତି ସେହି ଭଳି କାବ୍ୟ କବିତା ରଚନା କରି ନିଜ କବିତ୍ୱର ମଧ୍ୟ ପରାକାଷ୍ଠା ଦେଖାଇଛନ୍ତି । ସଂସ୍କୃତ ସାହିତ୍ୟ ଢାଞ୍ଚାରେ ଅତି ସରଳ ଓ ସାବଲୀଳ ଭାଷାରେ ଲେଖନୀ ଖୁଲନା କରିବାକୁ ଉଦ୍ୟମ କରିଛନ୍ତି । ସଂସ୍କୃତ ସାହିତ୍ୟର "ଲଳିତ ବିସ୍ତାର" ଓ "ବୁଦ୍ଧ ଚରିତ" କାବ୍ୟ ସହ ତାଙ୍କର ରଚିତ "ବୌଦ୍ଧାବତାର" କାବ୍ୟର ବହୁ ସାମଞ୍ଜସ୍ୟ ରହିଛି ।

ଉଦାହରଣ :

ଭୂଷିତାଙ୍ଗ ରାଜକୁଳକୁଳୀନଂ ଚକ୍ରବର୍ତ୍ତୀମାହାସ
ସଚ ପୁନବରିହିତ୍ୱା କାମ୍ୟ ରାଜ୍ୟଂତରଗେହେ ।
ବୁଦ୍ଧ ଭବତି ଶେଷେ ଦର୍ଶନୀୟ ସ୍ତ୍ରୀଲୋକେ
ଅମୃତ ରସ ବର୍ଷେଣ ତର୍ପୟେତ୍ ସର୍ବଲୋକମ୍" ।

(ଲଳିତ ବିସ୍ତାର)

"ବୋଇଲେ ସଂଭ୍ରମେ ଯେବେ ରାଜ୍ୟକ୍ରମେ
ରହିବେ ରାଜ ନନ୍ଦନ
ହେବେ ଚକ୍ରବର୍ତ୍ତୀ ଲଭିବେ ସମ୍ପତ୍ତି
ଏକ ଛତ୍ର ଏ ଭୁବନ ।
ହେଲେ ସେ ସନ୍ନ୍ୟାସୀ ଜଗତ ନିବାସୀ
ମାନବ ଉଦ୍ଧାର ପାଇଁ
କରିବେ ବିଧାନ ଦେଖି ଧନମାନ
ବିଷୟେ ସଂଶୟ ନାହିଁ ।

ଓଡ଼ିଆ ଭାଷାର ଯେତେବେଳେ ଅବକ୍ଷୟ ଘଟିଥିଲା ସେତେବେଳେ ଜଣେ ଯଥାର୍ଥ ସେନାପତି ଭାବେ ଫକୀର ମୋହନ ନିଜର ଲେଖନୀ ଖୁଲନା କରି ଓଡ଼ିଆ ଭାଷାର ସମ୍ପ୍ରସାରଣ କରିବାକୁ ପଛାଇ ନଥିଲେ । ସେତେବେଳେ ଓଡ଼ିଆ ଭାଷା ଅତି ବିପର୍ଯ୍ୟସ୍ତ ଅବସ୍ଥାରେ ରହିବା ସହ ଜମିଦାରଙ୍କ ପ୍ରାଦୁର୍ଭାବରେ ସାଧାରଣ ଜୀବନ ମଧ୍ୟ ହାହାକାରମୟ ହୋଇ ଉଠିଥିଲା । ସାଧାରଣ ଭାଷା ଓ ଚରିତ୍ରକୁ ଏକ ନୂତନ ଶୈଳୀରେ ପରିବେଷଣ କରି ସେ ଏକ ସାମାଜିକ ସଂସ୍କାର ଆଣିବା ପାଇଁ ପ୍ରୟାସ କରିଥିଲେ । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ସୃଷ୍ଟିର ପ୍ରାଣ-ପ୍ରତିଷ୍ଠା ଭାବେ ନିବିଡ଼ ଅନୁଭୂତିଗୁଡ଼ିକୁ ଖୁଞ୍ଜିଦେଇ ସେ ଓଡ଼ିଆ ସାହିତ୍ୟରେ ଏକ ନୂତନ ମୋଡ଼ ଆଣିବାରେ ସମର୍ଥ ହୋଇପାରିଥିଲେ ।

ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ଉତ୍କଳ ସମ୍ମିଳନୀରେ ଦେଇଥିବା ଆବେଗମୟ ଭାଷଣ ପ୍ରତ୍ୟେକଟି ଓଡ଼ିଆ ପ୍ରାଣରେ ପ୍ରାଣ ଭରିଦେଇ ପାରିଥିଲା । କେବଳ ଭାଷଣରେ ନୁହେଁ, ଜଣେ ଲୋକ ଜୀବନରେ ଯଥାର୍ଥ ଚିତ୍ରକର ଭାବେ "ଛମାଣ ଆଠଗୁଣ୍ଠ" "ଲଛମା" "ମାମୁଁ", "ପ୍ରାୟଶ୍ଚିତ", ଇତ୍ୟାଦି ଉପନ୍ୟାସଗୁଡ଼ିକରେ ... ଖୋଳ ଭିତରୁ ବାସ୍ତବ ମଣିଷର ଦର୍ଶନ ତଥା ନିଛୁକ ... କରି ଆଣିବା ପାଇଁ ଉଦ୍ୟମ କରିଛନ୍ତି ।

ଆଞ୍ଚଳିକ ଭାଷା ବିନ୍ୟାସରେ ସୁମଣ୍ଡିତ ଉପନ୍ୟାସଗୁଡ଼ିକରେ ହାସ୍ୟ ଓ ବ୍ୟଙ୍ଗରସ ପରିବେଷଣ କରି ସମାଜର ... ଉପରେ ତୀବ୍ର କଟୁ ବ୍ୟଙ୍ଗୋକ୍ତି ପ୍ରକାଶ କରିବାକୁ ସେ ପଛାଇ ନାହାନ୍ତି । ସମାଜରେ ନବ ଉନ୍ମେଷ ଭରିଦେବା ପାଇଁ "ଛମାଣ ଆଠଗୁଣ୍ଠ" ଉପନ୍ୟାସରେ ସଂସ୍କୃତ ଶବ୍ଦ ପ୍ରୟୋଗ କରି ତୀବ୍ର ସମାଲୋଚନା କରିଛନ୍ତି ।

ଉଦାହରଣ :

"ଯା ଦେବୀ ତୁଷ୍ଟମୁଣ୍ଡେଷୁ ଶିଳା ରୂପେଣ ସଂସ୍ଥିତା
ନମସ୍ତସ୍ୟୈ, ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ ।

...ଷ୍ଟ ପଜାଶ୍ରୁତା ବନ୍ଧ୍ୟାୟାଃ ପୁତ୍ରଦାୟିନୀ
...ସଂହାରିଣୀ ଦେବୀ ନାରାୟଣୀ ନମୋସ୍ତୁତେ ।”

ଫକୀର ମୋହନ ଦୁଃଖ ଜଞ୍ଜାଳ ଭିତରେ ନିଜର ଜୀବନକୁ ...ଥିଲେ ବି ଅର୍ଥାଭାବ ତାଙ୍କ ମନୋବଳକୁ ଭାଙ୍ଗି ଦେଇନି । ଓଡ଼ିଆ ସାହିତ୍ୟରେ ଉପନ୍ୟାସ ବ୍ୟତିରେକ ୨୦ଟି ଗଳ୍ପ ସହ ...ପ୍ରଭାସ", "ଧୂଳି", "ଅବସର ବାସରେ", ପୁଷ୍ପମାଳା", "ଉତ୍କଳ ଭ୍ରମଣ" ଭଳି ଗ୍ରନ୍ଥଗୁଡ଼ିକ ମଧ୍ୟ ରଚନା କରି ନିଜ ସମସ୍ତ କୃତୀକୁ ଚିରସ୍ଥାୟୀ କରିପାରିଛନ୍ତି ।

ଫକୀର ମୋହନ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଆ ଭାଷା ଓ ଜାତିର ବିକାଶ ଦିଗରେ ତାଙ୍କର ପ୍ରତିଟି ସମୟ ଅତିବାହିତ କରିଛନ୍ତି । ତାଙ୍କ ଲେଖନୀରେ ତତ୍କାଳୀନ ରାଜନୈତିକ, ଅର୍ଥନୈତିକ ତଥା ସାମାଜିକ ଅବସ୍ଥା ଚଳଚଞ୍ଚଳ ହୋଇ ଉଠିଛି । ବିଭିନ୍ନ ଚରିତ୍ର ମାଧ୍ୟମରେ ଓଡ଼ିଆ ଭାଷା ଓ ଭାବପ୍ରବଣତାକୁ ଲୋକମୁଖର କରି ସେ ଏକ ଯୁଗାନ୍ତକାରୀ ବିପ୍ଳବ ସୃଷ୍ଟି କରିଯାଇଛନ୍ତି । ତାଙ୍କର ଅବଦାନ ଓଡ଼ିଆ ଭାଷା ଓ ସାହିତ୍ୟରେ ଚିରକାଳ ପାଇଁ ଅବିସ୍ମରଣୀୟ ହୋଇ ରହିବ ।

---

ସାରସ୍ୱତ କୁଟୀର,
ହସ୍ତ ଗୋପାଳ ସାହି, ଢେଙ୍କାନାଳ ।



ବଲାଙ୍ଗୀରଠାରେ ସ୍ୱାଧୀନତା ଦିବସ ପାଳନ ଅବସରରେ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଘାସିରାମ ମାଝୀ ବିକଳାଙ୍ଗମାନଙ୍କୁ ତିନିଚକିଆ ସାଇକେଲ ପ୍ରଦାନ କରୁଛନ୍ତି ।

# ଫକୀର ମୋହନ ସେନାପତି : ଅବିସ୍ମରଣୀୟ ବ୍ୟକ୍ତିତ୍ୱ

● ଶ୍ରୀ ଉପେନ୍ଦ୍ର ପ୍ରସାଦ ଦାସ

ଓଡ଼ିଶାରେ ତଥା ଓଡ଼ିଆ ସାହିତ୍ୟରେ ଫକୀର ମୋହନ ସେନାପତି ସୁଦୂର ପ୍ରସାରୀ ଏକ ସୁପରିଚିତ ନାମ। ସମକାଳୀନ ଓଡ଼ିଶା ଓ ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ପ୍ରବର୍ତ୍ତକ ଭାବେ ଫକୀର ମୋହନ ଥିଲେ ଅଗ୍ରଦୂତ। ତାଙ୍କର ବ୍ୟକ୍ତିଗତ ଜୀବନ ତଥା ସାହିତ୍ୟିକ କୃତୀ ସହିତ ଓଡ଼ିଶାର ପ୍ରାୟ ଅର୍ଦ୍ଧ ଶତାବ୍ଦୀର ଇତିହାସ ଓତଃପ୍ରୋତ ଭାବେ ଜଡ଼ିତ। ୧୮୪୩ ମସିହା ଜାନୁଆରୀ ମାସ ୧୩ ତାରିଖ ମକର ସଂକ୍ରାନ୍ତି ଦିନ ବାଲେଶ୍ୱରସ୍ଥିତ ମଲ୍ଲିକାଶପୁର ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ। ଫକୀର ମୋହନଙ୍କର ଦୀର୍ଘ ୭୫ ବର୍ଷ ଜୀବନ କାଳକୁ ସାଧାରଣତଃ ୩ଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ। ୧୮୪୩-୧୮୭୦ ମସିହା ପର୍ଯ୍ୟନ୍ତ ୨୭ ବର୍ଷକୁ ପ୍ରଥମ ପର୍ଯ୍ୟାୟଭୁକ୍ତ କରାଯାଇଥାଏ। ଏହି ସମୟ ମଧ୍ୟରେ ସେ ୧୮୫୨ ମସିହାରେ ଶିକ୍ଷାରମ୍ଭ କରିଥିଲେ। ତାଙ୍କର ଜୀବନରୁ ସେତେବେଳର ଓଡ଼ିଶାର ଶିକ୍ଷା ପଦ୍ଧତିର ଚିତ୍ର ସ୍ପଷ୍ଟ ବୁଝା ପଡ଼େ। ସେ ସମୟରେ ଚାଟଶାଳୀମାନଙ୍କରେ ଶିକ୍ଷାର ସ୍ୱରୂପ କ'ଣ ଥିଲା, ତାହା ଫକୀର ମୋହନଙ୍କ ଆତ୍ମ ଚରିତ ଅଧ୍ୟୟନରୁ ଜଣାପଡ଼େ। ୧୮୬୨ରୁ ୧୮୬୪ ମଧ୍ୟରେ ସେ ବାରବାଟୀ ସ୍କୁଲରେ ଅଧ୍ୟୟନ ଓ ଶିକ୍ଷକତା କରିଥିଲେ। ୧୮୬୪-୧୮୭୦ ପର୍ଯ୍ୟନ୍ତ ବାଲେଶ୍ୱରର ମିସନାରୀ ସ୍କୁଲରେ ଶିକ୍ଷକତା ତତ୍କାଳୀନ ଶିକ୍ଷା ପଦ୍ଧତି ଉପରେ ବ୍ୟାପକ ଆଲୋକପାତ କରେ। ଫକୀର ମୋହନଙ୍କ ଶୈଶବାବସ୍ଥାରେ ପ୍ରାଚ୍ୟ ପାଶ୍ଚାତ୍ୟ ଚିନ୍ତାର ସଙ୍ଘର୍ଷ ଦେଖାଦେଇଥାଏ। ସେ ଥିଲେ ସେହି ପ୍ରତିକ୍ରିୟାର ଜୀବନ୍ତ ପ୍ରତିମୂର୍ତ୍ତି। ଓଡ଼ିଆ ଭାଷାକୁ ତା'ର ନ୍ୟାଯ୍ୟ ଅଧିକାର ଦେବା ପାଇଁ ପ୍ରକୃତରେ ଜଣେ ସେନାପତି ଭାବରେ ଏହି ଆନ୍ଦୋଳନରେ ଅବତୀର୍ଣ୍ଣ ହୋଇଥିଲେ। ଏଥି ନିମନ୍ତେ ତାଙ୍କର ସଙ୍ଗଠନ, କୌଶଳ, ଦୂରଦୃଷ୍ଟି, ପ୍ରତ୍ୟୁତ୍ପନ୍ନମତିତା, ନିର୍ଭୀକତା, କର୍ମନିଷ୍ଠା ଓ ତ୍ୟାଗ ଓଡ଼ିଆ ଜାତିର ଇତିହାସରେ ଚିରଦିନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ। ଓଡ଼ିଆ ଭାଷାକୁ ବଞ୍ଚାଇବା ପାଇଁ ଓଡ଼ିଆ ଭାଷାର ଆସ୍ତ ପ୍ରତିଷ୍ଠା ପାଇଁ ତାଙ୍କର ପ୍ରଚେଷ୍ଟା, ବଳିଷ୍ଠ ସାହସିକତା, ନିଷ୍ଠାପରତା, ସାଧୁତା ଜନ୍ ବିମସ୍‌ଙ୍କ ପରି ବିଦ୍ୱାନ ସାହେବଙ୍କର ଦୃଷ୍ଟିକୁ ଆସିଥିଲା। ଏହି ସାହେବଙ୍କର ସୁପାରିଶରେ, ଫକୀର ମୋହନ ସେନାପତି ଶିକ୍ଷକରୁ ଶାସକରେ ପରିଣତ ହୋଇଥିଲେ।

୧୮୭୧-୧୮୯୬ ପରବର୍ତ୍ତୀ ୨୬ ବର୍ଷ ହେଉଛି ଫକୀର ମୋହନ ସେନାପତିଙ୍କ ଜୀବନର ୨ୟ ପର୍ଯ୍ୟାୟ। ୧୮୭୧-୧୮୭୫ ପର୍ଯ୍ୟନ୍ତ ସେ ଥିଲେ ନୀଳଗିରିରେ ଦେବାନ୍। ୧୮୭୫ରୁ ୧୮୭୭ ସେ ଥିଲେ ଡମପଡ଼ାରେ ଦେବାନ୍। ୧୮୭୭ରୁ ୧୮୮୩ ପର୍ଯ୍ୟନ୍ତ [illegible] ଆସିଷ୍ଟାଣ୍ଟ ମ୍ୟାନେଜର୍। ୧୮୮୪-୧୮୮୬ ଦଶପଲ୍ଲାରେ ଦେବାନ୍, ୧୮୮୬-୧୮୮୭ ପାଲଲହଡ଼ାରେ ଦେବାନ୍, ୧୮୮୭-୧୮୯୪ ପର୍ଯ୍ୟନ୍ତ କେନ୍ଦୁଝରରେ ମ୍ୟାନେଜର୍। ୧୮୯୪-୧୮୯୬ ଯାଏ ଡମପଡ଼ାରେ ପୁନର୍ବାର ୨ୟ ଥର ପାଇଁ ଦେବାନ ଭାବରେ କାର୍ଯ୍ୟ କରି ସେ ତାଙ୍କର ପ୍ରଶାସନିକ ବିଚକ୍ଷଣତା ପ୍ରତିପାଦନ କରିଥିଲେ।

୧୮୯୬-୧୯୧୮ ଏହି ଶେଷ ୨୨ ବର୍ଷର ଜୀବନକାଳକୁ ଫକୀର ମୋହନଙ୍କ ସାହିତ୍ୟ ସାଧନାର ସୁବର୍ଣ୍ଣ ଯୁଗ ଭାବରେ କୁହାଯାଇଥାଏ। ଏହି ସମୟ ମଧ୍ୟରେ ସେ ବହୁ ଉଚ୍ଚକୋଟିର ଗଳ୍ପ, ଉପନ୍ୟାସ, କାବ୍ୟ କବିତା, ସମାଲୋଚନା ଓ ଭ୍ରମଣ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି। ଏହି ସବୁ କୃତିକୁ ପାଠ କଲେ ତାଙ୍କର [illegible] ଅନୁଭୂତି ଓ ଅଭିଜ୍ଞତାର ନିଛକ ଚିତ୍ର ସ୍ୱତଃ ମନରେ [illegible] ହୋଇଯାଏ। ଡକ୍ଟର ନଟବର ସାମନ୍ତରାୟଙ୍କ ଭାଷାରେ ସାଧନା ଓ ସଂଗ୍ରାମ ମୁଖର ଜୀବନ, ଦିନେ ଯେଉଁ ବାସ୍ତବ ଅନୁଭୂତି [illegible] କରିବାର ସୁବିଧା ପାଇଥିଲା, ତା'ର ଉପରେ ଫୁଟି ଉଠିଛି [illegible] ବିକଚ ଶତଦଳ।

## ସାହିତ୍ୟ ପ୍ରୀତି :

ଫକୀର ମୋହନଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି [illegible] ଅସାଧାରଣ। ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର ପ୍ରମୁଖ କବିମାନେ ଓଡ଼ିଆ ଭାଷାରେ ଯେଉଁ ସବୁ ବଳିଷ୍ଠ ପ୍ରାଣବନ୍ତ କାବ୍ୟ କବିତା ସୃଷ୍ଟି କରି ଯାଇଥିଲେ ସେହି ଭାଷା, ସେହି ସବୁ କାବ୍ୟ [illegible] ଉନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଅଧଃପତିତ ଭାଷା [illegible] ପରିଗଣିତ ହେଲା। ଏହି ଦୟନୀୟ ଅବସ୍ଥାରୁ ଓଡ଼ିଆ ଭାଷାକୁ ଉଦ୍ଧାର କରିବା ପାଇଁ ଫକୀର ମୋହନ ନିଜ ସାହିତ୍ୟ ମାଧ୍ୟମରେ [illegible] କରିବା ପାଇଁ ଫକୀର ମୋହନ ନିଜ ସାହିତ୍ୟ ମାଧ୍ୟମରେ [illegible] ଉତ୍ତୋଳନ କରିଥିଲେ। ଓଡ଼ିଶାରେ ଓଡ଼ିଆ ସାହିତ୍ୟ [illegible] କରିବାକୁ ସେ ଆପ୍ରାଣ ଚେଷ୍ଟା କରିଥିଲେ।

ଫକୀର ମୋହନଙ୍କ ସାହିତ୍ୟ ସୃଷ୍ଟିର [illegible] ଓଡ଼ିଶାର ଦୀର୍ଘ ୨୦୦ ବର୍ଷର ଇତିହାସ। ତାଙ୍କ ରଚିତ [illegible]

ଉପନ୍ୟାସରେ ଏହା ସମ୍ପୂର୍ଣ୍ଣ ରୂପେ ପ୍ରତିଫଳିତ ହୋଇଛି । ବିଶିଷ୍ଟ ସମାଲୋଚକମାନଙ୍କ ମତ ଏଠାରେ ସ୍ମରଣ କରାଯାଇପାରେ । ଡକ୍ଟର ନଟବର ସାମନ୍ତରାୟଙ୍କ ମତରେ 'ସେନାପତିଙ୍କ ୪ଟି ଉପନ୍ୟାସ ଓଡ଼ିଆ ସାମାଜିକ ଜୀବନର ଦୀର୍ଘ ୨୦୦ ବର୍ଷର ଇତିହାସ । ଏମାନେ ପ୍ରତ୍ୟେକ ସ୍ୱତନ୍ତ୍ର ଭାବେ ଆମ ଆଗରେ ଦେଖା ଦେଉଥିଲେ ହେଁ ଏମାନଙ୍କର ଅନ୍ତର୍ନିହିତ ଚିନ୍ତାଧାରା ଭିତରେ ଏହି ଘନିଷ୍ଠ ଐକ୍ୟ ପାଇଁ ଏମାନଙ୍କୁ ଗୋଟିଏ ବୃହତ୍ ଉପନ୍ୟାସର ୪ଟି ଖଣ୍ଡ ହିସାବ ରୂପେ ଗ୍ରହଣ କରିବାକୁ ଇଚ୍ଛା ହୁଏ । ଓଡ଼ିଆର ସାମାଜିକ ଜୀବନ ଦୀର୍ଘ ୨୦୦ ବର୍ଷ ଧରି ଯେଉଁ ପତନ ଅଭ୍ୟୁଦୟ ଉତ୍ଥାନ ପତନ ମଧ୍ୟ ଦେଇ ଗତି କରିଛି ତା'ର ସୁସ୍ପଷ୍ଟ ଚିତ୍ର ଆମେ ଏ ଉପନ୍ୟାସ ଭିତରେ ଦେଖିବାକୁ ପାଉ । ଏ ସାମାଜିକ ଜୀବନର ପରିଧି ସମସ୍ତ ବିଶେଷରେ ବିଭିନ୍ନ କେନ୍ଦ୍ରାଭିମୁଖୀ ହୋଇ ଉଠିଛି । ପତନ ପରେ ଏହାର ଅଭ୍ୟୁଦୟ ହୋଇଛି ନୂତନ ବେଶରେ । ଦ୍ୱିତୀୟତଃ ଡକ୍ଟର ମାୟାଧର ମାନସିଂହଙ୍କ ମତରେ 'କେବଳ ୪ଟି ଉପନ୍ୟାସର ପଶ୍ଚାତ୍ ପର୍ଦା ସହିତ ମୋଟାମୋଟି ପରିଚିତ ହୋଇଗଲେ ହେଁ ପାଠକେ ଦେଖି ବିସ୍ମିତ ହେବେ ଯେ କୌଣସି ପ୍ରକାର ଯୋଜନା ନିରପେକ୍ଷ ଭାବରେ କେବଳ ତତ୍କାଳୀନ ତାଗିଦାରେ ଲେଖା ଯାଇଥିଲେ ହେଁ ସେନାପତିଙ୍କର ରସୋତ୍ତୀର୍ଣ୍ଣ ଉପନ୍ୟାସ ଚତୁଷ୍ଟୟ ପରମ ସାହିତ୍ୟିକ ସାଫଲ୍ୟର ପଛପଟେ ଓଡ଼ିଆ ଜାତିର ଗତ ଦୁଇଶତ ବର୍ଷର ସାମାଜିକ, ରାଜନୈତିକ ଇତିହାସ ମଧ୍ୟ ଜୀବନ୍ତ ଭାବରେ ଦଣ୍ଡାୟମାନ ।'

ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର କହନ୍ତି 'ଫକୀର ମୋହନଙ୍କର କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସର କଥାବସ୍ତୁ ଓଡ଼ିଆ ସମାଜ ଓ ଇତିହାସରୁ ହିଁ ଗୃହୀତ ଏବଂ ଦୁଇଶତ ବର୍ଷର ସମାଜ ତଥା ସାମ୍ପ୍ରତିକ ସାମାଜିକ ପରିବେଷ୍ଟନୀରେ ତାହା ଏକ ଯୋଜନାବଦ୍ଧ ପ୍ରଣାଳୀରେ ନିପୁଣ ଭାଷା ଶୈଳୀରେ ସୁପରିକଳ୍ପିତ । ଫକୀର ମୋହନଙ୍କର ଉପନ୍ୟାସ ୪ଟି ୧୮୯୭ରୁ ୧୯୧୫ ମଧ୍ୟରେ ରଚିତ ହୋଇଥିଲା । ମାତ୍ର ୧୭୨୦ ଖ୍ରୀଷ୍ଟାବ୍ଦରୁ ୧୯୧୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମୟ ସୀମାର ଇତିହାସକୁ ଆଧାର କରି ଏହା ପରିକଳ୍ପିତ । ତାଙ୍କର ୪ଟି ଉପନ୍ୟାସ ହେଲା 'ଲଛମା (୧୭୨୦-୧୮୦୩)', 'ଛ'ମାଣ ଆଠଗୁଣ୍ଠ (୧୮୦୩-୧୮୪୦)', 'ମାମୁଁ (୧୮୪୧-୧୮୮୦)', 'ପ୍ରାୟଶ୍ଚିତ (୧୮୮୧-୧୯୧୫)' ।

## ଛାତ୍ର ଶିକ୍ଷକ :

ଡକ୍ଟର ମାୟାଧର ମାନସିଂହଙ୍କ ଭାଷାରେ 'ଫକୀର ମୋହନ ଥିଲେ ଛାତ୍ର ଶିକ୍ଷକ । ତେଣୁ ଶିକ୍ଷା ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ରହିବା ଏକାନ୍ତ ସ୍ୱାଭାବିକ । ଆକର୍ଷଣରୁ ଆନ୍ତରିକତା ସୃଷ୍ଟି ହୁଏ । ଆନ୍ତରିକତାରୁ ଯେଉଁ କର୍ମ ପ୍ରବାହ ସୃଷ୍ଟି ହୁଏ, ତାହା ପରବର୍ତ୍ତୀ ପର୍ଯ୍ୟାୟରେ ଏକ ଆଦର୍ଶ ସ୍ତମ୍ଭ ଭାବରେ ସମାଜରେ ଦଣ୍ଡାୟମାନ ହୁଏ । ଫକୀର ମୋହନ ତାଙ୍କ ଜୀବନ ଓ ସାହିତ୍ୟରେ ଏହି ଉକ୍ତିର ସତ୍ୟତା ପ୍ରମାଣ କରି ଯାଇଛନ୍ତି । ଫକୀର ମୋହନ ତାଙ୍କ ଆତ୍ମଜୀବନୀ ଚରିତରେ ଲେଖିଛନ୍ତି — 'ସେ ପ୍ରଥମେ ଚାଟଶାଳୀ ଗଲେ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଆରମ୍ଭ ସମୟରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ନିଜେ ଅନୁଭବ କରିଥିବା ଶିକ୍ଷା ସମ୍ପର୍କୀତ ସମସ୍ତ ତଥ୍ୟକୁ ତାଙ୍କର କୃତି ମାଧ୍ୟମରେ ବର୍ଣ୍ଣନା କରି ଯାଇଛନ୍ତି । ସେ ତାଙ୍କ ଯୌବନର ଆଦ୍ୟ ଅର୍ଘ୍ୟ, ସରସ୍ୱତୀଙ୍କ ପୂଜା ଅର୍ଚ୍ଚନାରେ ଅର୍ପିତ କରିଥିଲେ । ସହିତ କର୍ମଜୀବନର ତାଡ଼ନାରେ ଓଡିଶାର ବିଭିନ୍ନ ଅଞ୍ଚଳରେ ପ୍ରଶାସକ ଭାବେ କାର୍ଯ୍ୟ କରିଥିଲେ ସେହି ସମୟ ମଧ୍ୟରେ ସେହି ସ୍ଥାନମାନଙ୍କରେ ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ବିଶେଷ ଉଦ୍ୟମ କରିଥିଲେ । ସେତେବେଳେ ଓଡ଼ିଶାରେ ଶିକ୍ଷା ପରିସ୍ଥିତି ଘୋର ସଙ୍କଟର ସମ୍ମୁଖୀନ ହୋଇଥିଲା । ସାରା ଓଡ଼ିଶାରେ ଜଣେ ମାତ୍ର ଡେପୁଟୀ ଇନିସ୍ପେକ୍ଟର ଅବସ୍ଥାପିତ ହୋଇଥିଲେ । ତାଙ୍କ ଅଧୀନରେ ସର୍ବମୋଟ ୭ଟି ସ୍କୁଲ ଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମିସନାରୀମାନଙ୍କ ପ୍ରଚେଷ୍ଟାରେ ଆଧୁନିକ ଶିକ୍ଷାର ମୂଳଦୁଆ ସ୍ଥାପିତ ହୋଇଥିଲା । ସମୟକ୍ରମେ ସେହି ଶିକ୍ଷା ସରକାରୀ ତଥା ବେସରକାରୀ ସ୍ତରରେ ଅନେକ ବିଦ୍ୟାନୁରାଗୀ ସଜ୍ଜନ ବ୍ୟକ୍ତି ସୃଷ୍ଟି ହୋଇଥିଲେ । ଫକୀର ମୋହନ ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ଚାଟଶାଳୀରେ ପାଠପଢ଼ା ଶେଷ ପରେ ପିଲାମାନେ ଗୃହକୁ ଫେରିଯିବା ସ୍ୱାଭାବିକ । ମାତ୍ର ଫକୀର ମୋହନ ଅବଧାନଙ୍କୁ ରୋଷେଇରେ ସାହାଯ୍ୟ କରିଛନ୍ତି । ଗାଁ ଗାଁ ବୁଲି ଅବଧାନଙ୍କ ପାଇଁ ଚାଉଳ ଭିକ୍ଷା କରି ଆଣିଛନ୍ତି । ତଥାପି ବି ମାସିକ ଦରମା ସାମାନ୍ୟ ମାତ୍ର କେତେ ପଇସା ଦେଇ ନପାରି ଅବଧାନଙ୍କ ନିଷ୍ଠୁର ବେତାଘାତ ସହିବାକୁ ପଡ଼ିଛି । ଲୀଳାବତୀ ସୂତ୍ର ଜାଣିବା ପାଇଁ ପଣ୍ଡିତ ପ୍ରବର ହରେକୃଷ୍ଣ ପାଣିଗ୍ରାହୀଙ୍କ ସେ ଦ୍ୱାରସ୍ଥ ହୋଇଛନ୍ତି । ତାଙ୍କର ବିଦ୍ୟାର୍ଜନ ପାଇଁ ଗଭୀର ନିଷ୍ଠା ଅନନ୍ୟ ସାଧାରଣ । ଫକୀର ମୋହନ ବଙ୍ଗଳା, ସଂସ୍କୃତ, ଇଂରାଜୀ, ପାର୍ସି ପରି ଭାଷା ସମୂହକୁ ନିଜ ଚେଷ୍ଟାରେ ବିନା ଶିକ୍ଷକରେ ଆୟତ୍ତ କରି ପାରିଥିଲେ । ଜୀବନର ଅପରାହ୍ନରେ ତେଲୁଗୁ ପଣ୍ଡିତଙ୍କଠାରୁ ତେଲୁଗୁ ଭାଷା ଶିକ୍ଷା କରିବା ଅଦ୍ଭୁତ ଭାଷା ପ୍ରୀତିର ଏକ ମହନୀୟ ଦିଗନ୍ତ । ଶିକ୍ଷକ ଭାବରେ ଅଧିଷ୍ଠିତ ହେବା ପରେ ଶିକ୍ଷା ପ୍ରୀତି ତାଙ୍କର ବହୁ ଗୁଣିତ ହୋଇ ଯାଇଥିଲା । ଭୂଗୋଳ ଶିକ୍ଷକ ଭାବରେ ଫକୀର ମୋହନଙ୍କ ଦକ୍ଷତା ଏଠାରେ ପ୍ରଣିଧାନଯୋଗ୍ୟ । ନିଜର ଅବସର ସମୟରେ ଇଂରାଜୀ ସ୍କୁଲରୁ ମ୍ୟାପ୍ ମାଗିନେଇ ନିଜେ ସେହି ମ୍ୟାପକୁ ଆଙ୍କି ପିଲାଙ୍କୁ ଶିକ୍ଷା ଦେବାର ପଦ୍ଧତି ଗ୍ରହଣ କରିଥିଲେ । ୭ମ ଶ୍ରେଣୀ ପାସ୍ କରିନଥିବା ଫକୀର ମୋହନ ନିଜ ଚେଷ୍ଟାରେ ସେ କାଳରେ ଦେଶ ବିଦେଶରେ ଭୂଗୋଳ ଚର୍ଚ୍ଚା କରିବା ସଙ୍ଗେ ସଙ୍ଗେ ଯେପରି ତତ୍ତ୍ୱ, ଭଗ୍ନାଂଶ, ଦଶମିକ, ଘନମୂଳ ଇତ୍ୟାଦି ପର୍ଯ୍ୟନ୍ତ ଗଣିତ ବିଷୟ ମଧ୍ୟ ପିଲାଙ୍କୁ ଶିକ୍ଷା ଦେବାକୁ ସମର୍ଥ ହୋଇ ପାରିଥିଲେ । ଏହି ସବୁ ଦୃଷ୍ଟାନ୍ତରୁ ଫକୀର ମୋହନଙ୍କ ଶିକ୍ଷା ପ୍ରତି ଯେଉଁ ଅସମ୍ଭବ ଆକର୍ଷଣ ତାହା ସହଜରେ ଉପଲବ୍ଧି କରିହୁଏ ।

ଫକୀର ମୋହନ ତାଙ୍କ ଜୀବନ କାଳ ମଧ୍ୟରେ ବହୁ ଛାତ୍ରଙ୍କୁ ମଣିଷ କରି ଗଢ଼ିବାର ଦାୟିତ୍ୱ ବିଚକ୍ଷଣ ଭାବରେ ତୁଲାଇ ଦେଶ ତଥା ଜାତିର ବୃହତ୍ତର ସ୍ୱାର୍ଥ ରକ୍ଷା କରିଛନ୍ତି । ମାତୃଭାଷାର ସୁରକ୍ଷା ପାଇଁ ସେ ଜଣେ ଜାତୀୟ ଶିକ୍ଷକ ଭାବରେ ଅବତୀର୍ଣ୍ଣ ହୋଇଥିଲେ । କେତେକ ସମଧର୍ମୀଙ୍କ ସହଯୋଗିତାରେ ମଫସଲରେ ଶିକ୍ଷାର ବିସ୍ତାର ପାଇଁ ଆପ୍ରାଣ ଉଦ୍ୟମ ଚଳାଇ ବହୁ ଛାତ୍ର ସୃଷ୍ଟି କରିଥିଲେ । କାରଣ ସେ ବୁଝିଥିଲେ ଓଡ଼ିଆ ଭାଷାକୁ ବଞ୍ଚାଇବାକୁ ହେଲେ ତା'ର ପ୍ରସାର ଆବଶ୍ୟକ । ଭାଷାର ପ୍ରସାର କେବଳ ଶିକ୍ଷାର ପ୍ରସାର ଉପରେ ନିର୍ଭର କରେ । ତେଣୁ ତାଙ୍କ ନେତୃତ୍ୱରେ ଗଠିତ ସଙ୍ଗଠନ ପ୍ରସ୍ତାବ କରିଥିଲା — 'ଭାଷାର ବହୁଳ ପ୍ରସାର ନିମନ୍ତେ ମଫସଲମାନଙ୍କରେ ସ୍କୁଲ ସ୍ଥାପନ କରାଯିବା ଉଚିତ୍' । ଏହି ନିଷ୍ପତ୍ତିରେ ରେମୁଣା ଗ୍ରାମରେ ଏକ ସ୍କୁଲ ସ୍ଥାପିତ ହୋଇପାରିଥିଲା । ତେବେ ଏତିକି କୁହାଯାଇପାରେ ତତ୍କାଳୀନ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ସହିତ ଫକୀର ମୋହନ କେତେ ଘନିଷ୍ଠ ତାହା ତାଙ୍କର ଆତ୍ମ ଜୀବନ ଚରିତ ଗଳ୍ପସ୍ୱଳ୍ପର ଅନେକ ଗଳ୍ପ, ୩ଟି ଉପନ୍ୟାସ ଓ ତାଙ୍କର କାବ୍ୟ କବିତାରେ ପରିସ୍ଫୁଟ ହୋଇଛି ।

ଫକୀର ମୋହନଙ୍କ ସାହିତ୍ୟରୁ ତତ୍କାଳୀନ ଶିକ୍ଷା ପଦ୍ଧତି ଯଥା–ଚଟଶାଳୀ ଶିକ୍ଷାଠାରୁ ଆରମ୍ଭ କରି ପ୍ରାଥମିକ ଶିକ୍ଷା, ମାଧ୍ୟମିକ ଶିକ୍ଷା, ଉଚ୍ଚ ମାଧ୍ୟମିକ ଶିକ୍ଷା, ମହାବିଦ୍ୟାଳୟ ଶିକ୍ଷା ପଦ୍ଧତି ବିଷୟରେ ସୂଚନା ମିଳେ । ଫକୀର ମୋହନ ତାଙ୍କ ସାହିତ୍ୟରେ ନାରୀ ଶିକ୍ଷା ସମ୍ପର୍କରେ ପର୍ଯ୍ୟାପ୍ତ ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି । ନିଜେ ଜଣେ ସଂସ୍କାରବାଦୀ ସ୍ରଷ୍ଟା ହୋଇଥିବାରୁ ସମାଜରେ ନାରୀର ପ୍ରତିଷ୍ଠା ପାଇଁ ଆଧୁନିକ ଶିକ୍ଷାର ପ୍ରୟୋଜନୀୟତା ସପକ୍ଷରେ ସେ ଅପୀ ଗ୍ରନ୍ଥନା କରିଛନ୍ତି । ଫକୀର ମୋହନଙ୍କ ଶୈଶବାବସ୍ଥାରେ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ଅତି ଶୋଚନୀୟ ଥିଲା । ବର୍ତ୍ତମାନ ପରି ପାଠଶାଳା ବା ପ୍ରାଥମିକ ବିଦ୍ୟାଳୟ ନଥିଲା । ଓଡ଼ିଆ ତାଳପତ୍ର ପୋଥି ଏବଂ ପାଣିର ହାତଲେଖା ତଳିତାଳି କାଗଜ କିତାବ ଛଡ଼ା ଦେଶୀୟ ଭାଷାର ଛାପା ପୁସ୍ତକ କିଛି ଦେଖାଯାଉ ନଥିଲା । ଲୋକ ସାଧାରଣତଃ ଶିକ୍ଷା ପୂର୍ବ ରୀତିରେ ଗାଁ ଗାଁରେ ଚଟଶାଳୀମାନ ସ୍ଥାପିତ ଓ ମାଟିବଂଶ ନାୟକମାନେ ଅବଧାନ କର୍ମ କରୁଥିଲେ । ଏହି ଅବଧାନମାନଙ୍କର ବେଶ ପୋଷାକ ଥିଲା ସ୍ୱତନ୍ତ୍ର । ବହୁ ଦୂରରୁ ଏମାନେ ପୋଷାକରୁ ହିଁ ଚିହ୍ନି ହୋଇଯାଉଥିଲେ । ଚଟଶାଳୀର ଶାସନ ଶୃଙ୍ଖଳା ତ ଥିଲା । ବେଆଇନ କାର୍ଯ୍ୟକୁ ପ୍ରଶ୍ରୟ ଦିଆଯାଉ ନଥିଲା । ସମସ୍ତ କାର୍ଯ୍ୟ ନିୟମାବଦ୍ଧ । ଅବଧାନଙ୍କ ଅନୁପସ୍ଥିତିରେ ବଡ଼ ଚାଟ ବୋଲାଉଥିବା ଛାତ୍ରଜଣକ ଶୃଙ୍ଖଳା ରକ୍ଷା କରୁଥିଲେ । କାର୍ଯ୍ୟବିଧି ଲଙ୍ଘନକାରୀ ଚାଟ ପ୍ରତି ଦଣ୍ଡ ଅନିବାର୍ଯ୍ୟ । ଅବଧାନମାନଙ୍କ ଦଣ୍ଡ କୋମଳମତି ଶିଶୁଙ୍କ ପାଇଁ ଅତି କଠୋର ଥିଲା । ବେତ୍ରାଘାତ, ଏକଗୋଡ଼ିଆ ନାକବାଟି ଧରା, ଆଣ୍ଠୁ ଗୋପାଳ, ମଣ୍ଡୁଆଗାଣ୍ଠି ଇତ୍ୟାଦି ଭାବରେ କଥିତ ହେଉଥିଲା ।

## ଲୋକହିତକର କାର୍ଯ୍ୟ :

ଫକୀର ମୋହନ ଦଶପଲ୍ଲାରେ ତାଙ୍କ ଦେୱାନ ଥିବା ସମୟରେ ମୁଖ୍ୟତଃ ୩ଟି ଲୋକହିତକର କାର୍ଯ୍ୟ କରି ଆସିଥିଲେ । ସେଗୁଡ଼ିକ ହେଲା–ଫକୀର ମୋହନ ପୁଷ୍କରିଣୀ, ଫକୀର ମୋହନ ଏବଂ ଦଶପଲ୍ଲା ନିଜଗଡ଼ଠାରୁ ବେଲପଡ଼ା ପର୍ଯ୍ୟନ୍ତ ଏକ ସଡ଼କ ।

ବ୍ୟାସକବି ଫକୀର ମୋହନ, ଔପନ୍ୟାସିକ ଫକୀର ମୋହନ, ସ୍ରଷ୍ଟାଙ୍କ ଫକୀର ମୋହନ, ସମାଜ ସଂସ୍କାରକ ଫକୀର ମୋହନ, ଗୀତିକବି ଫକୀର ମୋହନ, କଥା ସମ୍ରାଟ ଫକୀର ମୋହନ ଜୀବନର ପ୍ରଥମ ୨୫ ବର୍ଷ ବିଭିନ୍ନ ପ୍ରତିକୂଳ ପରିସ୍ଥିତି ଓ ପରିବେଶ ଦ୍ୱାରା ନିୟନ୍ତ୍ରିତ ହୋଇଥିଲେ ହେଁ ଶେଷ ୫୦ ବର୍ଷ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନଧାରାକୁ ବହୁ ଭାବରେ ନିୟନ୍ତ୍ରଣ କରିଥିଲେ । ଓଡ଼ିଆ ଜାତିର ସଙ୍କଟ ବେଳେ ଫକୀର ମୋହନ ନିଜ ଲେଖନୀକୁ ଅସ୍ତ୍ର ରୂପେ ବ୍ୟବହାର କରି ଓ ଆଜୀବନ ସଂଗ୍ରାମ କରି ଓଡ଼ିଶା ଓ ଓଡ଼ିଆ ସାହିତ୍ୟକୁ ଆସନ୍ନ ମୃତ୍ୟୁ ମୁଖରୁ ବଞ୍ଚାଇଛନ୍ତି । ସେ କେବଳ ସେନାପତି ନଥିଲେ, ଓଡ଼ିଶା, ଓଡ଼ିଆ ଭାଷା ଓ ଓଡ଼ିଆ ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ପ୍ରଜ୍ଞା, ଶକ୍ତି, ସାଧନା, ଧୈର୍ଯ୍ୟ ଓ ଆତ୍ମୋତ୍ସର୍ଗର ସଂକଳ୍ପରେ ଥିଲେ ପ୍ରକୃତରେ ଓଡ଼ିଆ ଜାତିର ସେନାପତି ।

ଓଡ଼ିଆ ଜାତି ପ୍ରତି, ଓଡ଼ିଆ ଭାଷା ପ୍ରତି, ଓଡ଼ିଆବାସୀଙ୍କ ପ୍ରତି ସେ ଯେଉଁ ମମତା ଢାଳି ଦେଇଯାଇଛନ୍ତି, ସବୁଦିନ ପାଇଁ ପ୍ରତ୍ୟେକ ଓଡ଼ିଆ ପାଖରେ ଚିର ସ୍ମରଣୀୟ ହୋଇ ରହିବେ ।

(ସହାୟକ ଗ୍ରନ୍ଥ : ଫକୀର ମୋହନ ସାହିତ୍ୟରେ ସମକାଳୀନ ଓଡ଼ିଶା ଚିତ୍ର)

ପ୍ରକାଶନ ଅଧିକାରୀ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ



ସ୍ୱାଧୀନତା ଦିବସ ପାଳନ ଅବସରରେ ଗଞ୍ଜାମ ଜିଲ୍ଲାର ଶ୍ରେଷ୍ଠ ବିବେଚିତ ବ୍ରହ୍ମପୁର ମ୍ୟୁନିସିପାଲିଟିର ଉପ ନଗରପାଳ ଶ୍ରୀ ଭଗବାନ ଗନ୍ତାୟତ, ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କଠାରୁ ସିଲଡ୍ ଗ୍ରହଣ କରୁଛନ୍ତି ।

OGP—MP—PTS (I&PR) 36—10,000—5-9-1992




ଭୁବନେଶ୍ୱର ବରମୁଣ୍ଡାଠାରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ହୃଦ୍ ରୋଗ ଓ କର୍କଟ ଗବେଷଣା କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି (୧୪/୮)।




ଭୁବନେଶ୍ୱରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ସଦ୍‌ଭାବନା ଦିବସ ଉପଲକ୍ଷେ ଏକ ସଭାରେ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଶପଥ ପାଠ କରାଉଛନ୍ତି (୨୦/୮)।

Licence No. C.R.N.P. 5—Licensed to post without Pre-payment . No.O-05/92



ସୂଚନା ଭବନଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ 'ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ' ଶୀର୍ଷକ ପ୍ରଦର୍ଶନୀକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ବୁଲି ଦେଖୁଛନ୍ତି (୯/୮)।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ୧୯୯୨ ସ୍ୱାଧୀନତା ଦିବସ ଉପଲକ୍ଷେ ଭୁବନେଶ୍ୱରସ୍ଥିତ ମହାତ୍ମା ଗାନ୍ଧୀ ମାର୍ଗଠାରେ ଆୟୋଜିତ ରାଜ୍ୟସ୍ତରୀୟ ପ୍ୟାରେଡ୍‌ରେ ଅଭିବାଦନ ଗ୍ରହଣ କରୁଛନ୍ତି (୧୫/୮)।

AT ORISSA GOVERNMENT PRESS, CUTTACK-10

